# ‘ଅନାମ ବାୟାର ଗୀତ’ ସଂପର୍କରେ ଅଭିମତ

କୁନି କୁନି ଛନ୍ଦମୟ ‘ପାଦ’ରେ ଅନାମ ଯେତେବେଳେ ବିଂଶ ଶତାବ୍ଦୀର ଅଷ୍ଟମ ଦଶକରେ ଓଡ଼ିଆ ସାହିତ୍ୟକୁ ଆସିଲା, ତା ଦେହରେ ଥିଲା ଶ୍ରୀକ୍ଷେତ୍ରର ଦୟଣା-ତୁଳସୀର ଗନ୍ଧ, ବକ୍ତବ୍ୟରେ ବ୍ୟକ୍ତିର ଅନନ୍ତ ପ୍ରତି ଅନ୍ୱେଷଣ ସହିତ ଥିଲା ତୀବ୍ର ସମାଜ ଭାବନା । ବ୍ୟତିକ୍ରମୀ ଏ ରୂପ ଅନାମକୁ ପରିଚିତ କରାଇଥିଲା; ଛନ୍ଦମୟ ଗାୟନ ଓ ହୃଦୟସ୍ପର୍ଶୀଭାବ କରାଇଥିଲା ଲୋକପ୍ରିୟ । ଏଇ ନୂଆଧାରାର ଭଗୀରଥ ଥିଲେ କୁମାର ମହାନ୍ତି ।

**ପ୍ରଫେସର ଡ. କଇଳାଶ ପଟ୍ଟନାୟକ**
ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ,
ବିଶ୍ୱଭାରତୀ, ଶାନ୍ତିନିକେତନ

କୁମାର ମହାନ୍ତି ଓରଫ୍ କୃଷ୍ଣଚନ୍ଦ୍ର ମହାନ୍ତି ଓଡ଼ିଶାରେ ଅନାମ ଆନ୍ଦୋଳନର ମୁଖ୍ୟ କର୍ଣ୍ଣଧାର । ତାଙ୍କର ବୃତ୍ତିଗତ ଜୀବନ ବାୟୁସେନାରୁ ଶିକ୍ଷକତା ଓ ସେଠାରୁ ପୋଲିସ୍ ବିଭାଗ ପର୍ଯ୍ୟନ୍ତ ପରିବ୍ୟାପ୍ତ । ପାଶ୍ଚାତ୍ୟ ସାହିତ୍ୟର ଅନ୍ଧାନୁସରଣରେ ରଚିତ ଓଡ଼ିଆ କବିତା ବିରୋଧରେ ତୀବ୍ର ପ୍ରତିକ୍ରିୟାଶୀଳ କୁମାର ଭାଇ ପାରଂପରିକ ଛାନ୍ଦସିକ ସରଳତା ମାଧ୍ୟମରେ କବିତାକୁ ପାଠକୀୟ ଆଦୃତି ପ୍ରଦାନ କ୍ଷେତ୍ରରେ ହୋଇଛନ୍ତି ସମର୍ଥ । ଏହାର ଆଦ୍ୟ ସ୍ୱାକ୍ଷର ନବିନିର୍ମିତ ‘ନବାନ୍ୱେଷୀ’ କବିତା ସଂକଳନ । ୧୯୬୯ ମସିହାରେ ପାଞ୍ଚଜଣ ସମଧର୍ମୀ ବନ୍ଧୁଙ୍କ ସହଯୋଗରେ ସ୍ୱର୍ଗଦ୍ୱାରରେ ସେ ଘୋଷଣା କରନ୍ତି ‘ଅନାମ ଆନ୍ଦୋଳନ’ର ଇସ୍ତାହାର । ମୁଖପତ୍ର ରୂପେ ଆବିର୍ଭାବ ଲାଭକରେ ‘ଅନାମ’ । ପରେ ମଧୁ ମହାନ୍ତି ଇତ୍ୟାଦିଙ୍କ ପ୍ରୋତ୍ସାହନରେ ଅନାମ ଆନ୍ଦୋଳନ ପରିଣତ ହୁଏ ଏକ ସାହିତ୍ୟିକ ଧାରାରେ । ଶୀର୍ଷକହୀନ ଭାବରେ କୁମାର ମହାନ୍ତି ଓ ତାଙ୍କର ସାଥୀମାନେ ଓଡ଼ିଆ ସଂସ୍କୃତି ଓ ଜୀବନଧାରାକୁ ପରିଚିତ ଛନ୍ଦ ତଥା ଜନବୋଧଗମ୍ୟ ଭାଷାରେ କବିତାରେ ପ୍ରକାଶ କରି ନିର୍ମାଣ କରନ୍ତି ଗୋଟିଏ ନୂଆ ସ୍ୱର । ସରକାରୀ ଚାକିରିରେ ଥାଇ ଜରୁରୀ ପରିସ୍ଥିତି ବିରୋଧରେ କବିତାରେ ପ୍ରତିବାଦର ସ୍ୱର ତୋଳି ଦଣ୍ଡିତ ହୋଇବି ନିଜ ଅକୁତୋଭୟତାର ପରିଚୟ ଦେଇଛନ୍ତି । ସଂସ୍କୃତିର ନାଭିନାଡ଼ ମାଧ୍ୟମରେ କବିତାର ଏନ୍ତୁଡ଼ିଶାଳକୁ ନୂଆ ସ୍ୱରରେ କରିଛନ୍ତି ଅନୁରଣିତ । ‘ଅନାମ ବାୟାର ଗୀତ’ (୧୯୯୪), ‘ଅନାମ ଛନ୍ଦ’ (୧୯୯୬) ଆଦି ସଂକଳନରେ ତାଙ୍କ କାବ୍ୟସ୍ୱରର ଶାଣିତତା, ଆଭିମୁଖ୍ୟ ଓ ସାମାଜିକ ପ୍ରତିବଦ୍ଧତା ସ୍ପଷ୍ଟ ।

**ପ୍ରଫେସର ଡ. କୃଷ୍ଣଚନ୍ଦ୍ର ପ୍ରଧାନ**
ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ,
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, କୋରାପୁଟ

ମୋ ପାଠକୀୟତା ସେତିକିବେଳେ ଗୁମ୍‌ମାରି ବସିଯାଏ ଯେତେବେଳେ ଆମ ସାହିତ୍ୟ - ଇତିହାସର ଲୋଚନଲେଖନୀ ଲେଖିବସେ – କୁମାର ମହାନ୍ତି ଜଣେ ବିପ୍ଳବୀ ପ୍ରଗତିବାଦୀ କବି । ଅନାମଗୋଷ୍ଠୀର ଭିତ୍ତିପୁରୁଷ ଏ କବିଙ୍କ ଅନାମ ଅଣାକାର, ଅନାମଛନ୍ଦ, ଅନାମର କାବ୍ୟ ଓ ଅନାମ ବାୟାର ଗୀତ ତଥା ଏବେ ଏବେ ମନୁଦାଶଙ୍କ ଆବୃତ୍ତିକରା ନିର୍ବାଚିତ କବିତା ସଂପର୍କରେ ମୋ ଗ୍ରାହକୀୟ ଉପଭୋକ୍ତାର ମନସତ୍ତାଟି ଆସିଯାଏ ସେତେବେଳେ ନାମପ୍ରାର୍ଥୀ, ମନ୍ଦଯଶପ୍ରାର୍ଥୀ, ରୋଗାଳୁ ଯଶାଭିଳାଷୀ ଆମ ନବ୍ୟ ଉପନିବେଶବାଦୀ ଅସ୍ତିତ୍ୱଗୁଡ଼ିକ ତାଙ୍କ କବିତାର କୋମଳ ଇଙ୍ଗିତର ଝାସରେ କିପରି ଈର୍ଷିତ ଉତ୍ତାପରେ ଡହଳି ଉଠନ୍ତି ତାହା ଅନୁଭବ କରି ଜଗତୀ ଉପର ହନୁପରି ଭିତିରି ବାସ୍ତବତାର ପ୍ରତିବାଦୀ ଚିତ୍ରକରଣର ଚମତ୍କାରିତାକୁ କୁମାର ମହାନ୍ତିଙ୍କ କବିତାରେ ଦେଖୁଥାଏ । କୁମାର ମହାନ୍ତିଙ୍କ କବିତା:

- ସୁବିଧାବାଦୀ ମଧୁରତ୍ୱକୁ ସୂକ୍ଷ୍ମ ଇଙ୍ଗିତରେ ଚହଲେଇ ବଦଳେଇ ତରଳେଇଦିଏ ।
- ଉତ୍କଳୀୟ ବିଷୟବାସନା ପ୍ରତି ଭାବାନ୍ତରିତ ଅଳୀକ ତତ୍ତ୍ୱକୁ ଅନ୍ତର୍ନିହିତ ସ୍ୱର ଭାବରେ ପ୍ରବାହୀ କରି ଦେଇ ତାଙ୍କ କବିତାର ଶବ୍ଦସଜ୍ଜାଣ ଭିତରେ ବିବେକୀ କଲ୍ୟାଣବୋଧର ଏକ ଇଙ୍ଗିତ ଥାଏ ଯାହା ପାଠକକୁ ସଜାଡ଼ିଦିଏ ଓ ସାର୍ବିକ ଜୀବନ ପ୍ରତି ସମ୍ବେଦନଶୀଳ କରିଦିଏ ।
- ସୁତରାଂ ତାଙ୍କ କବିତା ବିବେକ ଉଷ୍ମାଣ, ଚେତନା ଚିଆଁଣ ଓ ମଣିଷର ମର୍ଯ୍ୟାଦା ପ୍ରତି ଆସକ୍ତ ଉପୁଜାଣର ପ୍ରବୋଧନକାରକ କବିତା ।

ମୋ ପାଠକସତ୍ତା ସେସବୁ ଶବ୍ଦ ଭିତରେ ଯୋଡ଼ିହୋଇ ଆପଣାକୁ ସଜାଡ଼େ, ଉଖାରେ ଓ ଥାପାଏ ।

**ପ୍ରଫେସର ଡ. ସନ୍ତୋଷ ତ୍ରିପାଠୀ**
ବିଭାଗୀୟ ମୁଖ୍ୟ, ସ୍ନାତକୋତ୍ତର
ଭାଷା ଓ ସାହିତ୍ୟ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର

କୁମାର ମହାନ୍ତିଙ୍କର କବିତାଗୁଡ଼ିକରେ ଯେଉଁ ଜୀବନ-ସତ୍ୟ ଉକୁଟି ଉଠିଛି, ତାହା ବାସ୍ତବିକ ଅତ୍ୟନ୍ତ ମର୍ମସ୍ପର୍ଶୀ । ଏ ମର୍ତ୍ତ୍ୟଭୂମିରେ ମଣିଷ ଓ ମଣିଷତ୍ୱର ମହତ୍ତ୍ୱ ମଳିନ ପଡ଼ିଯାଉଥିବାର ବେଦନାକୁ ସେ ଯେପରି ସରଳ ଭାଷାରେ ପ୍ରକାଶ କରିଛନ୍ତି ସେଥିରୁ ଅନୁଭବ କରିହୁଏ ଯେ ଦିବାଲୋକରେ ଲଣ୍ଠନ ଧରି ସକ୍ରେଟିସ୍‌ଙ୍କ ପରି ସେ ଖୋଜିବୁଲୁଛନ୍ତି ମାନବିକତାର ମହନୀୟତାକୁ । ତାଙ୍କର ହୃଦୟର ବ୍ୟଥା ସଞ୍ଚରଣକ୍ଷମ ଯେ ତାହା ପାଠକ ବା ଶ୍ରୋତାର ଅନ୍ତଃସ୍ଥଳକୁ ମନ୍ଥିତ କରିଦିଏ । ସେପରି ନିଦାଶବ୍ଦ ସଂରଚନା କରୁଥିବା କବି ଆଜି କେତେ ବିରଳ ସତେ ! ତାଙ୍କର ମଣିଷପଣିଆ ଓ ପ୍ରକୃତ ମଣିଷକୁ ଖୋଜିବୁଲୁଥିବାର ସୂକ୍ଷ୍ମ ଆତ୍ମାଟି ଆଜିବି ଆକାଶ ପବନରେ ରହିଛି ସଞ୍ଜିବିତ ହୋଇ । ଖାଲି ଦରକାର ଟିକିଏ ଆନ୍ତରିକତା ସେହି ବ୍ୟଥାଭରା କଣ୍ଠସ୍ୱର ଶୁଣିବା ପାଇଁ ।

**ପ୍ରଫେସର ଡ. ମଣୀନ୍ଦ୍ର କୁମାର ମେହେର**
ବିଭାଗମୁଖ୍ୟ ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ
ଫକୀରମୋହନ ବିଶ୍ୱବିଦ୍ୟାଳୟ, ବ୍ୟାସବିହାର, ବାଲେଶ୍ୱର



ଧଉଳି ବୁକ୍ସ
୮୧୮/୨୫୦୨, ଗୋବିନ୍ଦେଶ୍ୱର ରୋଡ, ଓଲ୍ଡ ଟାଉନ
ଭୁବନେଶ୍ୱର, ଓଡ଼ିଶା ୭୫୧୦୦୨

ଅନାମ ବାୟାର ଗୀତ
(କବିତା ସଂକଳନ)

ଲେଖକ: କୁମାର ମହାନ୍ତି

ପ୍ରଥମ ପ୍ରକାଶନ ୨୦୨୦

ପ୍ରଚ୍ଛଦ: କୁଅଁର ରବୀନ୍ଦ୍ର

ଅକ୍ଷର ସଂଯୋଜନା: ପ୍ରଥମ ବହି, କଟକ, ଓଡ଼ିଶା

ମୁଦ୍ରଣ: ଥମ୍‌ସନ୍ ପ୍ରେସ୍ (ଇଣ୍ଡିଆ) ଲିମିଟେଡ୍, ନୂଆ ଦିଲ୍ଲୀ

ଧଉଳି ବୁକ୍ସ ତରଫରୁ ମନୁ ଦାଶଙ୍କ ଦ୍ୱାରା ପ୍ରକାଶିତ

ଆଇ.ଏସ୍.ବି.ଏନ୍. ୯୭୮-୯୩-୮୯୩୮୨-୩୨-୭
ମୂଲ୍ୟ: ₹୧୯୫/-

Dhauli Books
(an imprint of Dhauli Review Trust)
Plot 818/2502, Gobindeswar Road, Old Town
Bhubaneswar 751002, Odisha, India
email: contactdhaulibooks@gmail.com

Anama Bayaar Gita
(collection of poems)

Author: Kumar Mohanty

First published in 2020

Cover: Kunwar Ravindra

Typeset by Pratham Bahi, Cuttack, Odisha

Printed and bound by Thomson Press (India) Ltd., New Delhi

Published by Manu Dash for Dhauli Books

ISBN 978-93-89382-32-7
Price : ₹ 195/-

# ଆଦ୍ୟ କଥନ

ଏ ଭୂଇଁର ନଈ ଓ ପାହାଡ଼, ବଣ ଓ ଜୁଆର ଦିନେ ଓଡ଼ିଆଙ୍କୁ ପ୍ରକୃତିର ପୂଜକ କରିଥିଲା। ବେଦରେ ଯିଏ ଅଗ୍ନି ଠାରୁ ମରୁତ ଯାଏଁ, ସୂର୍ଯ୍ୟଙ୍କ ଠାରୁ ଇନ୍ଦ୍ରଙ୍କ ଯାଏଁ ସ୍ୱାହା ଓ ସୋଧାରେ ବରଣ କରିଥିଲେ-ତାଙ୍କର ଅନେକ ଆଗରୁ, ଏ ମାଟିର ଇତର ଶବର ଦାରୁକୁ ଦେବତା କରି ତା'ର ଇନ୍ଦ୍ରିୟ-ଅନୁଭୂତିରେ, ଇନ୍ଦ୍ରିୟ-ଅତୀତ-ଆତ୍ମାପୁରୁଷକୁ ସେଥିରେ ଆରୋପ କରିଥିଲା। ତାଙ୍କରି ଠାରୁ ଶିଖି, ଦଧିଚିଙ୍କ ଅସ୍ଥିଦାନରେ ବଜ୍ରର ସର୍ଜନା ନ ହୋଇଥିଲେ କ'ଣ ବାରିଦର ବର୍ଷଣ ସମ୍ଭବ ହୋଇଥାନ୍ତା ? ଋତରେ ସେହି ସତ୍ୟ ସନ୍ଧାନରୁ, ପ୍ରକୃତିର ସେଇ ଅଲଂଘ୍ୟ ପ୍ରବୃତ୍ତିରୁ-ବନବାସୀ ଓଡ଼ିଆ ଯେଉଁଦିନ ଜନପଦବାସୀ ହେଲେ- ସେ ତାଙ୍କ ବ୍ୟକ୍ତି ପୁରୁଷକୁ କଲେ ବହୁଧା-ସାର୍ବିକ, ସର୍ବଂଧର ପୁଣି ବିଶ୍ୱମ୍ଭର।

ପୁରୁଷୋତ୍ତମ-ଧର୍ମୀ ଓଡ଼ିଆର ଏଇ 'ହୃଦୟ ପ୍ରସାର' ଦେଖି-ଆଗତ ଆର୍ଯ୍ୟମାନେ ଯାଜ୍ଞିକ ଶୌର୍ଯ୍ୟ ବୀର୍ଯ୍ୟକୁ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ସଙ୍ଗେ ମିଳାଇ ଯେଉଁ ଆତ୍ମୀୟତାର ସହଜ ସ୍ୱଧର୍ମରେ ଦେବତାକୁ ଦେଉଳରୁ ମଣିଷର ମନ ମନ୍ଦିରକୁ ଟାଣି ଆଣିଥିଲେ, ତା' ଯେତେବେଳେ ଓଲଟା ସୁଅରେ ମଣିଷକୁ ଦେବତା କରି, ଦେବତାଙ୍କୁ ଦେଉଳରେ ବନ୍ଦୀ କଲା, ସେତେବେଳେ-ଖାଲି 'କ୍ୱଃ ଗତା ମଥୁରାପୁରୀ' କହି ଦରାଣ୍ଡି ହେଲେ- 'ତେ ହିନୋ ଦିବସା ଗତାଃ'-ଆଉ ଫେରିବନି।

କାମ-ମୋହିତ କ୍ରୌଞ୍ଚ ମିଥୁନର ସଂଯୋଗକୁ ଶରାହତ କରି ଯିଏ ଆଦ୍ୟ ଶ୍ଳୋକର ସ୍ମରଣ କରାଇଥିଲା, ସେ ଅଭିଶପ୍ତ ନିଶାଦର ଆଶୀର୍ବାଦରୁ ହିଁ ଓଡ଼ିଆ କାରିଗର କୋଣାର୍କର ପଥରକୁ ମୁଖର କରିପାରିଥିଲେ। ସେ ଅକ୍ଷରକୁ ଅପାଠୁଆ ପଢୁଥିଲେ, ପଣ୍ଡିତେ ତା'ର ଅର୍ଥ କରୁଥିଲେ। କୋଣାର୍କର ଦର୍ପଣଧାରିଣୀ ଖାଲି ନିଜ ମୁହଁ ଦେଖୁ ନଥିଲା। ଯାହା ଦେଖୁଥିଲା, ସେଥିରେ ଥିଲା- ବିଶ୍ୱ ଆତ୍ମାର ପ୍ରତିଫଳନ।

ମୁହଁର ଦାଗକୁ ନ ଲିଭେଇ ଦର୍ପଣକୁ ଭାଙ୍ଗିଦେଲେ-ଅସୁନ୍ଦର ସୁନ୍ଦର ହେଇଯାଏନି। ଝରଣାର ଦର୍ପଣରେ ଓଡ଼ିଆଣୀ ତା' ମୁହଁ ଦେଖି ଆତ୍ମପ୍ରୀତିରେ ବିଭୋର

ହେଇଥିଲା- "ମୁଁ ଯାହା ଚାହେଁ-ସେ ଏଇ।" ଶାଳଭଞ୍ଜିକାରେ ତା'ର ଥିଲା ପ୍ରକୃତିକୁ ଆଲିଙ୍ଗନ ଆସ୍ୱାଦ। ଗଛର ଡାଳ ଓ ଝରଣାର ପାଣି, ଆତ୍ମାର ପ୍ରତିଫଳନ ଓ ପ୍ରକୃତିକୁ ପ୍ରବୃତ୍ତିର ଆଲିଙ୍ଗନ-ଏଇ ଦୁଇ ଧାରାରେ ଓଡ଼ିଆର ସହଜ ସ୍ୱ-ଧର୍ମ-ରତିରେ କରୁଥିଲା ଆ-ରତି ତା'ର ପୁରୁଷୋତ୍ତମଙ୍କୁ ସେ ସଂଯୋଗିନୀ ଶକ୍ତିକୁ ତନ୍ତ୍ର, ମନ୍ତ୍ର, ଯନ୍ତ୍ର-ଯିଏ ଯେଉଁବାଟରେ ପୂରାଇ, ଚଳାଇ ଆପଣାର ଅକ୍ତିଆରରେ ରଖିବାକୁ ଯୁଗେ ଯୁଗେ ପ୍ରୟାସ କରିଆସିଛନ୍ତି-ତାଙ୍କରି ସେହି ବ୍ୟବସାୟୀ ବ୍ୟର୍ଥତାକୁ ପୁଣି ଆତ୍ମିକ ବନ୍ଧନରେ ବାନ୍ଧିବାର କାମନା ହିଁ-କୁମାରର କବିତାରେ ସ୍ପନ୍ଦିତ। ପୁରୁଷୋତ୍ତମ ଧର୍ମୀ କୁଟୁମ୍ବଙ୍କୁ ବଶମ୍ବଦ ସମ୍ବୋଧନ ତା' କବିତାର ଧ୍ୱନୀ ଓ ଧ୍ୟାନ।

**– ମଧୁ ମହାନ୍ତି**

# କିଛି କହିବାର ଅଛି

କବି କୁମାର ମହାନ୍ତିଙ୍କ ପ୍ରୟାଣର ୨୫ ବର୍ଷ ହେଲାଣି। 'ଅନାମ ବାୟାର ଗୀତ' ୧୯୯୪ରେ ବିବୁଧରଂଜନଙ୍କ ପ୍ରକାଶନ ସଂସ୍ଥା 'ପ୍ରଜ୍ଞାଲୋକ' ପ୍ରକାଶ କରିଥିଲେ କୁମାର ଭାଇଙ୍କ ବିୟୋଗର କିଛି ମାସ ପୂର୍ବରୁ। ସେଥିପାଇଁ ବିବୁଧ ଭାଇଙ୍କୁ କୃତଜ୍ଞତା ଜଣାଉଛି।

୧୯୭୪ ମସିହାର ଶେଷ ଭାଗରୁ କୁମାର ଭାଇଙ୍କ ବିୟୋଗ (୧୯୯୬) ପର୍ଯ୍ୟନ୍ତ ମୁଁ ପ୍ରତ୍ୟକ୍ଷ ଓ ପରୋକ୍ଷରେ ତାଙ୍କ ସହିତ ଥିଲି। 'ଅନାମ କାବ୍ୟ ଆନ୍ଦୋଳନ'ର ସେ କେବଳ ପ୍ରତିଷ୍ଠାତା ନଥିଲେ, ବରଂ ଥିଲେ ସବୁଠୁ ମୁଖର ଓ ଶିଖର ବ୍ୟକ୍ତିତ୍ୱ।

ତାଙ୍କ ଅକସ୍ମାତ ବିୟୋଗ ପରେ ଅନାମମାନଙ୍କ କବିତାର ଏକ ସଂକଳନ ପ୍ରକାଶ କରିବାର ଇଚ୍ଛା ଥିଲା। ମାତ୍ର ଅନେକ ପ୍ରତିଘାତ ଯୋଗୁଁ ତାହା ଏଯାବତ୍ ସମ୍ଭବ ହେଇପାରିନି। ମୋର ବିଶ୍ୱାସ ଅଛି ଏହା ଦିନେ ନା ଦିନେ ଲୋକଲୋଚନକୁ ଆସିବା ସହ ଆମର ସାହିତ୍ୟିକ, ଆଲୋଚକ ଏବଂ ଗବେଷକମାନଙ୍କୁ ବେଶ୍ ଖୋରାକ୍ ଯୋଗାଇବ।

କୁମାର ଭାଇଙ୍କ ବିୟୋଗର ପ୍ରାୟ ସାତବର୍ଷ ପରେ ପ୍ରାବନ୍ଧିକ ଚିତ୍ତରଂଜନ ଦାସ, ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ପତ୍ରିକା କୋଣାର୍କରେ ଏକ ପ୍ରବନ୍ଧ ଲେଖିଥିଲେ। ଏହି ସଂକଳନରେ ଆମେ ତା'ର ପୁନଃ ପ୍ରକାଶ କରିବା ସହ ଓଡ଼ିଶା ସାହିତ୍ୟ ଏକାଡେମୀକୁ କୃତଜ୍ଞତା ଜଣାଉଛୁ। ଏହି ପ୍ରବନ୍ଧଟି ଗବେଷଣାଲିପ୍ସୁ ବ୍ୟକ୍ତିମାନଙ୍କ ପାଇଁ ବେଶ୍ ସହାୟକ ହେବ ବୋଲି ଆମର ଆଶା।

ଏହି କବିତା ସଂକଳନ ନିମନ୍ତେ ସେମାନଙ୍କ ବୁଦ୍ଧିଦୀପ୍ତ ଓ ମହତ୍ୱପୂର୍ଣ୍ଣ ମନ୍ତବ୍ୟ ଦେଇଥିବାରୁ ମୁଁ ପ୍ରଫେସର କଇଳାଶ ପଟ୍ଟନାୟକ, ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ, ପ୍ରଫେସର ସନ୍ତୋଷ ତ୍ରିପାଠୀ ଓ ପ୍ରଫେସର ମଣୀନ୍ଦ୍ର କୁମାର ମେହେରଙ୍କ ପାଖରେ ଗଭୀର ଋଣୀ।

'ଅନାମ କାବ୍ୟ ଆନ୍ଦୋଳନ'ରୁ ମୋର ସାହିତ୍ୟ ଜୀବନର ଉନ୍ମେଷ, କୁମାର ଭାଇଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ।

ଆଜି ମୁଁ ଏ ସଂକଳନଟି ପ୍ରକାଶ କରି ଚରମ ଆତ୍ମସନ୍ତୋଷ ଲାଭ କରୁଛି।

ଭୁବନେଶ୍ୱର **ମନୁ ଦାଶ**

୧ ସେପ୍ଟେମ୍ବର, ୨୦୨୦

# ପ୍ରଥମ ଅଧ୍ୟାୟ

ମୁଁ ଜାଣିନି କିଏ ସେ ମୁଁ -
ନାରୀ କି ପୁରୁଷ ଅବା
ଅର୍ଦ୍ଧ ନାରୀଶ୍ୱର ?

କେତେ ବା ବୟସ ମୋର ?
ବାଳକ ଯୁବକ ଅବା ବୟୋବୃଦ୍ଧ ମୁହିଁ
କିବା ମୋର ଶାରୀରିକ ସ୍ଥିତି.... ?
ମୁଁ କିବା ଆକାଶ ପରି ଶୂନ୍ୟ ଏବଂ ଛଳନାର ନୀଳ ? ?

ହୁଏତ ମୁଁ ଡେଇଁପାରେ ଆକାଶ ପରିଧି
ଗଢିପାରେ ଅଟ୍ଟାଳିକା
ଚନ୍ଦ୍ର, ଶୁକ୍ର, ମଙ୍ଗଳ ପିଠିରେ
ହୁଏତ ମୁଁ ବସିପାରେ ଦେଖିବାକୁ
ସୂର୍ଯ୍ୟର ଶୀତଳ ଶରୀର-
କିନ୍ତୁ ହାୟ
କେତେ ଲକ୍ଷ ସୌର ଜଗତ
ମୁଁ ଅବା ଖେଦିବି ?

ହୁଏତ ଓ ନିଶ୍ଚିତର ଅନ୍ତହୀନ ଇତିହାସ ଛାତିରେ
ତଥାପି ମୁଁ ଜାଣିନାହିଁ-କିଏ ସେ ମୁଁ ?
ଜାଣୁନାହିଁ ଜାଣିବିନି ବୋଧେ
ମୁଁ ଜାଣିନି-
କିଏ ଉଚ୍ଚାରିଲା ଦିନେ ମୁଁ ବୋଲି

ମୁଁ ସେଇ ଅସୁମାରୀ ଅନାମଧେୟ
'ମୁଁ'ଙ୍କ ଭିତରୁ ଜଣେ
ଯେ ଫିଙ୍ଗିଛି 'ମୁଁ'ର ସ୍ଥିତିକୁ-
ଅନ୍ୟାର୍ଥେ ଅନାମ ।

ମୋ ପ୍ରଥମ କୁଆଁ ରାବ ଶୁଣି
ମା' ମୋର ଭିଡ଼ିନେଲା ଶବ୍ଦଟିଏ
ମୋ ଚିହ୍ନଟ ଲାଗି
ତା'ର ସେ ବ୍ୟକ୍ତିଗତ ମାତୃତ୍ୱର ଗର୍ବ-
ମୋ ଜୀବନେ ରୁଣ୍ଡ କଲା ଯିଏ
ଅହମିକା ଅହଂକାର
ସୃଷ୍ଟି କଲା ବ୍ୟକ୍ତିର କିଆରି;
ଆଉ ଦେଲା-
ଅପରକୁ ଅଧିକାର କରିବାର ନିଶ୍ଚିତ କାମନା
ମତେ କଲା ଭିନ୍ନ
ମୋର ସହଜାତ ପ୍ରବୃତ୍ତିରୁ
ମତେ କଲା ଛିନ୍ନ
ମୋର ପ୍ରାକୃତିକ ଗୋଷ୍ଠୀ ଜୀବନରୁ
ତା' ପରେ ମୁଁ ଧାଇଁଚାଲେ ମୋ ପ୍ରତିଷ୍ଠା ପାଇଁ
କଳେବଳେ ଅଥବା କୌଶଳେ ।

ମୁଁ ବଂଚିଛି ମୋ ପାଇଁ ଅର୍ବୁଦ ଅର୍ବୁଦ ବର୍ଷ
ଯେ ଦିନୁ ମୁଁ ନାମ ନେଲି
ଭିନ୍ନ ହେଲି ଅପରଠୁ
ଭାଙ୍ଗିଗଲା
କୋଟି କୋଟି ଅନାମଙ୍କ
ନିଃସ୍ୱାର୍ଥୀ ଓ ନୈର୍ବ୍ୟକ୍ତିକ ସମାଜ
ଭାଙ୍ଗିଗଲା ସରଳ ଓ ଶାନ୍ତ ଜୀବନ
ସକାଳେ ଧରିବା ହଳ ଦିପ୍ରହରେ ମାଛମାରି
ସନ୍ଧ୍ୟାରେ ଗାଇବା ଗୀତ ପ୍ରୀତିର ବାହୁବନ୍ଧନେ

ଛାଡ଼ିଦେଲେ ନାମୀ ନାମୀ ଯେତେକ 'ମୁଁ
ଗାଦି କଲେ
ଅଟ୍ଟାଳିକା ତୋଳି ତାକୁ ଦୁର୍ଗରେ ବେଢ଼ିଲେ
ନିଜ ନିଜ ନାମର କୋକୁଆ ଭୟ
ଦୁର୍ଗ ଚାରିକରେ ପେଟେଇଲା

ଗଡ଼ଖାଇ ହୋଇ
ସୈନ୍ୟ ଚାହି, ସୈନ୍ୟପାଇଁ ଅସ୍ତ୍ର ଚାହି
ଅସ୍ତ୍ର ପାଇଁ ଉତ୍ପାଦନ ଚାହି
ଚାହି ଚାହି, ଆଉ ଆଉ, ଦରକାର, ଆବଶ୍ୟକ.....

ଆକାଶ ଭରିଲା
ସେଇ 'ଚାହି'ର ଏକଇ ଚିତ୍କାରେ ଏବଂ
ଅଗଣନ ତା ସହ ବିଶେଷଣ ଶବ୍ଦର ଛାଇରେ ।

ନିଜନାମ ସୁରକ୍ଷାର ପାଇଁ
ଲକ୍ଷ ଲକ୍ଷ ସୃଷ୍ଟି ହେଲା
ଛୋଟ ଛୋଟ ନାମ
କୃଷ୍ଟି ପାଇଁ, କୃଷିପାଇଁ, କଳାପାଇଁ, ରୂପପାଇଁ
ଶୌର୍ଯ୍ୟ ବୀର୍ଯ୍ୟ ଦାନ ଧର୍ମ
'ସମାଜ-ସୁନ୍ଦର'ଙ୍କ ପାଇଁ
ଯେ' ହୋଇଲା ଝୁଣ୍ଟିଆଳ, ଗୋଡ଼ାଣିଆ
ସେ ହେଲା ସୁଜନ
ଯେ ଚାଲିଲା ସୁଅପରି
ଅଝଟିଆ ଅମାନିଆ
ସେ ହେଲା ଏ ନାମର ସମାଜେ
ଅନାମା ଦୁର୍ଜନ

× × ×

ଅନାମ ମୁଁ, ଦୁର୍ଜନ ମୁଁ
ମୁଁ ଆସିଛି ମୋରି ଭିତରେ
ନିଶାର୍ଦ୍ଧର ନିର୍ଜିବ ପ୍ରହରେ
ମୁଁ ହସିଛି ଉପହାସେ ମତେ ଚାହିଁ
ମୋ ସ୍ୱାର୍ଥୀ କାମନାର ପୂର୍ତ୍ତି ଅବସରେ
ମୁଁ କାନ୍ଦିଛି ମୋ ଲାଗି
ଅନୁତପ୍ତ ବୟସର ଉଜାଣି ସ୍ରୋତରେ

ମୁଁ ଶୁଣିଛି ମୋ ପରିପାର୍ଶ୍ୱରେ
ମୋ ସୃଜିତ ଈଶ୍ୱରର ଆର୍ତ୍ତନାଦ ଅଭିଶାପ
ମୋ ଭିତରେ ନିଜକୁ ମୁଁ ଗହଳିଆ କରି
ବହୁବାର ବହିଅଛି ଗଙ୍ଗାର ସଙ୍ଗମେ
ତା' ପରେ ମୁଁ ନିଶ୍ଚିହ୍ନ ହୋଇଛି ।

ମୁଁ ଜନ୍ମିଛି ବହୁବାର କାଳର କୋଳରେ
କହିବାକୁ କିମ୍ବଦନ୍ତୀ
ଲେଖିବାକୁ ବେଦର କବିତା
ଚାଲିବାକୁ ସଙ୍ଗେ ବହି ସମୟର ମହାନଦୀ
ଫିଙ୍ଗିଦେଇ ନଦୀକୂଳେ ଶୃଙ୍ଖଳା ଧାରକୁ

କେତେବେଳେ କୃଷ୍ଣ ହୋଇ
ବଢ଼ିବାକୁ ଗୋପପୁରେ
ଆଜନ୍ମ ଦୁର୍ଜ୍ଜନ କିନ୍ତୁ ସଭିଙ୍କ ଦୁଲାଳ
କେତେବେଳେ ବୁଦ୍ଧ ହୋଇ
ଫିଙ୍ଗିବାକୁ ନିଶାର୍ଦ୍ଧରେ
ପିତାମାତା ପତ୍ନୀପୁତ୍ର ଓ ଗଜ ସିଂହାସନ
ଆଉ କେବେ ଯୀଶୁ ମୁହିଁ ଅବୈଧ ସନ୍ତାନ
ବୋହିବାକୁ ମୋ ସ୍କନ୍ଧରେ
ପୃଥିବୀର ସବୁ ପାପ
ଧୋଇବାକୁ ବୈଧଙ୍କର ସମସ୍ତ କଳଙ୍କ
ମୋ ଦେହୁ ନିଗାଡ଼ି ଶେଷ ରକ୍ତ କଣିକା ।

ସୁଜନେ ମୋ ଜନ୍ମତିଥି ପାଳିଛନ୍ତି
ମେଳା ମଉଛବେ
ପୂଜିଛନ୍ତି ମୂର୍ତ୍ତୀ ମୋର
ଆଙ୍କିଛନ୍ତି ଚିତ୍ରସବୁ ପଥର କାନ୍ଥରେ
ବସିଛନ୍ତି ଶୁଣିବାକୁ ମଧ୍ୟରାତ୍ରୀ ଘଣ୍ଟାସ୍ୱନ
ଡାକିଛନ୍ତି ଉଚ୍ଚସ୍ୱରେ ଗମ୍ବୁଜ ଚୁଡାରୁ;
ମୁଁ କିନ୍ତୁ ଜାଣିଛି

ସ୍ଥାନ ମୋର ଧରିତ୍ରୀର ଶାନ୍ତ କୋଳରେ
ଶବ୍ଦ ସବୁ ଇଥରରେ
ମୋ କୁଳରେ କେହି ନାହିଁ ବୋଲି
ମୋ କୁଳକୁ ମୋ ହାତେ ମୁଁ ନିଶ୍ଚିହ୍ନ କରିଛି
ଏବଂ ମୁଁ ଜନ୍ମ ନେଇଛି ବେଳେବେଳେ
ଯେତେବେଳେ ଅତି 'ମୁଁ'
ବିକଟାଳ ରୂପନେଇ ଗ୍ଲାନି ହିଁ ଭରିଛି ।

ମୁଁ ଜନ୍ମିଛି ବାରମ୍ବାର ଏକାଟିଆ
ଏକେଲା ଚାଲିଛି ସବୁ ଦୁର୍ଗମ ପଥରେ
ମନେ ମୋର ଏକହିଁ ଚେତନା
ସମନ୍ୱୟ 'ମୁଁ'ର ମାଟିରେ
ଏକ ବ୍ୟକ୍ତି ସର୍ବେ ହେବେ
ଏବଂ ସମସ୍ତେ ବଞ୍ଚିବେ ସଦା ସୁଖ ଓ ଶାନ୍ତିରେ ।

× × ×

ମୋ ଡାକ ଅଶୁଣା କିନ୍ତୁ
ପ୍ରତି ମୁଁ ଏକ ଏକ ଭିନ୍ନ ଛଳନା
ନିଜ ପାଇଁ ବ୍ୟୁହ ରଚି
ବଞ୍ଚିଛନ୍ତି ବଟ ବୃକ୍ଷ ସମ
ଯା ଛାୟାରେ ଆଉ କେହି ବଢ଼େ ନାହିଁ ।
ମଥା ଯେ ଟେକିଛି ଦେଖିବାକୁ
ବଟବୃକ୍ଷ ସେପାରି ରୋଷଣୀର ସ୍ନିଗ୍ଧ ଚାଞ୍ଚଲ୍ୟ
ପତ୍ରଛାୟା ଦେଇଛି ତାହାକୁ ବିଷାକ୍ତ ପିଆଲା
ନିଜହାତେ ପିଇବାକୁ ;

ଅଥଚ ଏ ବଟବୃକ୍ଷ କୋରଡ଼ରେ
କେତେ ସାପ କେତେ ପୁଣି ଶାଗୁଣାର ବସା !
ତଥାପି ମୁଁ ଜନ୍ମ ନିଏ
ସହିବାକୁ ଘୋଡ଼ାର କୋରଡ଼ା
ପିଇବାକୁ ନିଜ ରକ୍ତ ନିଜ ପାପୁଲିରେ
ଆଞ୍ଜୁଳା ଆଞ୍ଜୁଳା

ବଞ୍ଚିରହେ କ୍ଷୁଧିତ, ତୃଷାର୍ତ୍ତ, ଦୁରାବ୍ୟାଧିଗ୍ରସ୍ତ
ଖାଲିଟିକେ ଚେତାବନୀ ଦେବାପାଇଁ
କାହିଁକି ଏ ମିଥ୍ୟା ଆସ୍ଫାଳନ
କାହିଁକି ଏ 'ମୁଁ'ର ଦୌରାତ୍ମ୍ୟ
ସମସ୍ତେ କି ହେବା ନାହିଁ ଏକ
ଏ ମେରୁରୁ ସେ ମେରୁ ପର୍ଯ୍ୟନ୍ତ ? ? ?
ସମସ୍ତେ କି ପାଇବେନି
ସେଇ ଆତ୍ମ ଦ୍ୟୁତିର
ବ୍ୟାପ୍ତ ଆଲୋକ ? ? ?

# ଦ୍ୱିତୀୟ ଅଧ୍ୟାୟ

ଏଥର କି ଚିହ୍ନିପାରୁଛ ମୋତେ ?
ମୁଁ ଅଛି ତୁମରି ଭିତରେ ଏବଂ
ସଭିଙ୍କର ସମାହାର ମୁହିଁ
ତେଣୁ ମୋର ରଙ୍ଗ ନାହିଁ ରୂପ ନାହିଁ
ସମସ୍ତ ରଙ୍ଗର ସମାହାର ମୋ ଦେହରେ
ଏବଂ
ସବୁ ରୂପ ନେଇ
ମୁଁ ଏକ କିମ୍ଭୁତ କିମାକାର ରୂପ ।

ମୁଁ ବଞ୍ଚିଛି-
ଯେ ଦିନୁ ଜାଣିଛ ତୁମେ
ବଞ୍ଚିଅଛି ବୋଲି
ମୁଁ କିଛି ଦେଇନି ତୁମକୁ
ମୁଁ କିଛି ନିଏନି ତୁମଠୁ
ମୁଁ କେବଳ ଚିର ନୈର୍ବ୍ୟକ୍ତିକ ଆଲିଙ୍ଗନ ଲାଗି
ପାପୁଲି ବିହିନ ମୋର
ପ୍ରସାରିତ ବିପୁଳ ଭୁଜରେ
ଯା' ଭିତରେ ସବୁ ମୁଁ ସତ୍ତା ହାରିଯାଏ ।

କେତେ ବ୍ୟସ୍ତ ସତେ ତୁମେ
ମତେ ପାଇବାକୁ
କେବେ ହୋଇ ଭୃତ୍ୟ ମୋର
କେବେ ଅବା ସଖା
ଆଉ କେବେ ସନ୍ତାନ ବାତ୍ସଲ୍ୟ ଖୋଜି
କେବେ ପୁଣି କାନ୍ତା ନିଜକୁ ମଣି ।

ମୁଁ କିନ୍ତୁ ବଞ୍ଚିଛି ସଦା
ତୁମରି ଭିତରେ
ତୁମେ କେବେ 'ମୁଁ'ର ଭିତରୁ
ଖୋଜିଛ ନିଜକୁ ?
ତୁମେ ଯଦି ପାଇଯା'ନ୍ତ 'ମୁ'ର ମୋତିକୁ
ଆକାଶ ଛୁଅନ୍ତା ନାହିଁ
ଏତେ ମନ୍ଦିର ଦଧିନଉତି
ଗୀର୍ଜା ଅବା ମସ୍‌ଜିଦ୍ ଗମ୍ବୁଜ ;
ପଣ୍ଡା, ମୁଲ୍ଲା ଓ ଫାଦରଙ୍କ କଦର୍ଯ୍ୟ ମୁଖରୁ
ଚିରନ୍ତାନି
ନରହନ୍ତା ଧର୍ମ ଯୁଦ୍ଧ ଡାକ,
ରାଜପଥେ ଧାନ କ୍ଷେତେ
ଗଳିକନ୍ଦି ସାଇ ସାଇ
ଜଳନ୍ତାନି ରକ୍ତର ମଶାଲ ।
ମୁଁ କେବେ ଚାହିଁନି
ପୂଜାପାଠ ଭୋଗ ଧୂପ
ଘଣ୍ଟମାଡ଼
ଆଲ୍ଲା ହୋ ଆକ୍‌ବର ଡାକ
ଅବା ମହମବତୀ ଧୂଆଁ ;
ମୁଁ କେବେ ଚାହିଁନି ଚାନ୍ଦା
ଦେବୋତ୍ତର ଭୂମି
ମୁଁ ଚାହିଁଛି
ତମେ ବୁଝ ତୁମକୁ ସର୍ବଦା
ସେଇଥିରେ ତୁମେ ହେବ ମୋର
ଏବଂ ମୁଁ ହେବି ତୁମର ।

× × ×

ତୁମେ କିନ୍ତୁ ଦିଗହରା
ମହାନଗରୀରେ ତୁମ
ଲୁପ୍ତ ତୁମେ

ତୁମରି ସୃଜିତ ପଲ୍ଲୀରେ......
ଏ ନଗ୍ର ଓ ପଲ୍ଲୀ ସବୁ ଧୂଆଁ ଧୂଆଁଳିଆ
ତୁମ ଆଶା କୁହେଳୀର
ନଗ୍ନ ବିଥିକାରେ ।

ମୁଁ ଦେଖୁଛି-
ଏ ସମସ୍ତ ପଲ୍ଲୀ ଓ ନଗରେ
ତୁମେ ସବୁ ହାରିଛ ନିଜକୁ ;
ଆଶା ଅଶ୍ୱ ଧାଇଁଯାଏ
ପୃଷ୍ଠେ ବହି କାମନାର ସହସ୍ର ମନ୍ଦିର
ଯେ ମନ୍ଦିରେ ତୁମେ ନାହଁ
ନାହିଁ ତୁମ 'ମୁଁ'ର କଣିକା ;
ସେଠି କେହି ବାବା 'ମା'
ଗୁରୁ ଅନ୍ୟ କେହି-
ନିଜକୁ ନ ପାଇବାର
ଘୃଣ୍ୟ ଏକ ମାନସିକ ଡକାୟତି ।

ତୋ ଭିତରେ ମୁଁ ଅଛି
ତା ଭିତରେ ମୁଁ
କିଏ କାହା ଗୁରୁ ଏଠି ?
ସଭିଏଁ ତ କ୍ଷୁଦ୍ର କ୍ଷୁଦ୍ର ଅଂଶ ଯାହା ମୋର
ଯେପରି ତୁ
ମୋ ଅନାମୀ ଜୀବନର
ମହତ୍ତ୍ୱର ଅବତୀର ଏକା
ତୁ ତୋ ନିଜର ଗୁରୁ
ମୁଁ ମଧ୍ୟ ନୁହେଁ
ତୋ ବିନା
ମୋ ସ୍ଥିତିର ବି ଅର୍ଥ କିଛି ନାହିଁ ।

× × ×



ମୁଁ ଜନ୍ମିଛି ଆଜିଯାଏଁ ନଅଥର
ତୁମରି ଭିତରେ
ତୁମକୁ ଟାଣିଛି ଶବର ପଲ୍ଲୀରୁ
ଜାତିସଂଘ ଶତତଳ ପ୍ରାସାଦ ପର୍ଯ୍ୟନ୍ତ ।

ତୁମକୁ ଦେଇଛି
ଅନନ୍ୟ ବାସ୍ନାର ଏକ ଶ୍ରୀ ମହାପ୍ରସାଦ
ସାମ୍ୟ, ମୈତ୍ରୀ ଓ ପ୍ରୀତିର
ସମ୍ପୂର୍ଣ୍ଣ ପଂକ୍ତି ଭୋଜନ ପାଇଁ,
ତୁମେ କିନ୍ତୁ ଭୃତ୍ୟସବୁ-
ମାଟିରେ ପୋତିଲ ମୋର ଆଦ୍ୟ ଚେତନା
ତୁମେ ଯେତେ ସଖା ମୋର
ପଶ୍ଚାତ୍‌ପଦ ହେଲ ନାହିଁ
ବନ୍ଧୁତ୍ୱର ଗଳାଟିପି ଫିଙ୍ଗିବାକୁ ପାଉଁଶ ଶେଯରେ
ତୁମେ ସବୁ କୁଳାଙ୍ଗାର ସନ୍ତାନ ମୋ
ସ୍ତନ୍ୟପାନ ଅବସରେ
ଆଶାକଲ ମୋହରି ଯୋନିକୁ
ଏବଂ କାନ୍ତା ମୋର ତୁମେ ପୁଣି
ମୋ ସହ ରତିରେ ମାତି
ଚିନ୍ତୁଥିଲ ଅପର ପୁରୁଷ ?

ସେ ହେତୁ ଲଢ଼ିଛ ତୁମେ
ନିଜର ସହିତ
ସୂଚ୍ୟଗ୍ର ମେଦିନୀ ପାଇଁ
ନାରୀର ଯୌବନ ପାଇଁ
ମୃତ୍ୟୁପରେ ମୂର୍ତ୍ତି ପାଇଁ
ଆଜି ପୁଣି ସ୍ୱପ୍ନ ଦେଖ
ଅସୁମାରୀ ବିଭସ୍ସ ରାତିର
କିଲୋଗ୍ରାମ ଶରୀର ସହ

କେଇ ଟନ୍
ଆଣିବକି ବୋମାର ତୁଳନା କରି ।
ତୁମେ ସବୁ ଭାଗକର ନିଜର ସମ୍ପତ୍ତି ।
ଏ ପାରେ ଲାଲ୍ ପତାକା
ସେ ପାରେ ଧନୀକର ବିକଟ ଚିତ୍କାର
ତା' ଭିତରେ ଛୋଟ ଛୋଟଧର୍ମ କେତେ
ଜାତି କେତେ ଇଚ୍ଛା କେତେ
ସୀମା ଏବଂ ପରିସୀମା କେତେ
ଆଉ କେତେ ବର୍ଣ୍ଣ ଏଠି
କେତେ ପୁଣି ବାଦ ବିସମ୍ବାଦ,
ସେ ସବୁ ମଝିରେ ଆଜି
ମୁଁ ଦେଖୁଛି
ଯେଉଁ 'ମୁଁ' ପାଇଁ ତୁମେ ନାମ ନେଇଥିଲ
ସେ 'ମୁଁ' ନାହିଁ ଏବଂ
ଅନାମ ଥିବାର ପୂର୍ବ ଆଭିଜାତ୍ୟ ବି ନାହିଁ !

ଆଜି ମୋ ଗରଜ ପଡ଼ିଛି ତେଣୁ
ଜନ୍ମିବାକୁ ଆଉଥରେ
ଚଢ଼ିବାକୁ ଧଳା ଘୋଡ଼ା
ଛେଦିବାକୁ ଛଳନାର ସମସ୍ତ ସମ୍ପର୍କ
ଏ ଭୃତ୍ୟ ସନ୍ତାନ ସଖା ଅବା ପତ୍ନୀ
କେହି ଆଉ ଦରକାର ନାହିଁ
ମୁଁ ଚାହେଁ ନିଜର କରିବ ତମେ
ଅପରକୁ
ଗୋଟିଏ ସମ୍ପର୍କ ସୂତ୍ରରେ
ମହା ମୈତ୍ରୀ ମନ୍ତ୍ର ନେଇ
ସାମ୍ୟ ଚେତନାର
ସ୍ୱ-ମେଧ ଯଜ୍ଞରେ
ମମତାର ଅହଙ୍କାରେ
ଶତ ପ୍ରୀତି ନଦନଦୀ ସଙ୍ଗମ ସ୍ଥଳରେ !

# ତୃତୀୟ ଅଧ୍ୟାୟ

ସମସ୍ତ ମୁଁ ମିଳିମିଶି
ଚିତା କୁଟିଛନ୍ତି
ସମଗ୍ର ଧରାର ଦେହେ
ବ୍ୟଭିଚାରୀ ବିବର୍ଣ୍ଣ ଅକ୍ଷର ସବୁ
ଏବଂ ତା ଭିତରେ ପ୍ରତ୍ୟେକ 'ମୁଁ'
ଭଙ୍ଗା ବାରଣ୍ଡାରେ କେଉଁ
ଅଣଓଳା ମାଟିଟେଳା ପରି ।

ଏ ସବୁ ସହରି ଜୀବନ ଦ୍ୱୈତ-ବ୍ୟକ୍ତିତ୍ୱର
ଦୁର୍ଭିକ୍ଷରେ ଅଖାଦ୍ୟ ଭୋଜନ ସମ
ଓ ଯେତେକ ପଲ୍ଲୀ ଭଣ୍ଡ ଧରଣୀର
ମଶାଣୀରେ ପଡ଼ିଥିବା
ଶାଗୁଣା ଖୁମ୍ପା କେଉଁ
ବାସି ମଡ଼ାପରି ।
ପଥ କାହିଁ କେବଣ ରାଜ୍ୟକୁ ଯିବି ?

ବହୁଦିନୁ ଫିଙ୍ଗିଅଛି
ବଣଝାଡ଼ ପାହାଡ଼ ଓ ଗଛର କୋରଡ଼
ତ୍ୟାଗ କଲି
ମହୁଲ ନିଶାରେ ତାଳେ ତାଳେ ନାଚି
ଘୋଟଲ୍‌ରୁ ବାଛିବା ପ୍ରଥା
ଜୀବନ-ସାଥୀର ମନ, ପ୍ରାଣ, ହୃଦୟ, ଶରୀର
ବହୁଦିନୁ ଛାଡ଼ିଅଛି ଖାଦ୍ୟ ଆହରଣ
ହେବାପାଇଁ ସ୍ୱ ଖାଦ୍ୟର ଉତ୍ପାଦନକାରୀ

ତା'ପରେ ଲିଖିତ
ଶହ ଶହ ବର୍ଷର କ୍ରମ ପରିଣାମ
ଏକ ଏକ ସରଳ ପଂକ୍ତିରେ ।
ତେବେ ବି ଧାଇଁଛି ନିୟୁତ ନିୟୁତ ଜୀବନ
ନିଜର ସର୍ଜନା ପାଇଁ
ମୁଁ ଯେଣୁ ସାବ୍ୟସ୍ତ କରିନି
ଅଧିକାର ଆଜିଯାଏଁ
'ମୁଁ'ର ଉପରେ
ମୁଁ କି ପାରିବି କେବେ ଅଧିକାର କରି
କୌଣସି ବସ୍ତୁକୁ
ଏବଂ କୌଣସି ବସ୍ତୁକି କା'ର ଅଧିକାର ଯୋଗ୍ୟ ?

× × ×

ଅନ୍ଧାର.... ଅନ୍ଧାର ଖାଲି ।
ଚାରିଦିଗେ ବିକଟାଳ ଅନ୍ଧାରର
କରାଳ ତାଣ୍ଡବ
କେଉଁଠୁ ଏ ଛାଇପଡ଼େ
କାହାର ଏ ଛାଇ ?
କେତେଦୂରେ ବସିଛି ସେ
ଏ ଛାଇର ସ୍ତବ୍ଧ ସ୍ରଷ୍ଟା କିଏ
କିଏ, କିଏ....କିଏ ସିଏ ?
ଆଉ ସେଇ ଦୂରେ ଦୂରେ
ବହୁ ଦୂରେ
କିଏ ସେ ଡାକୁଛି ଜଣେ
ନିସ୍ତବ୍ଧତା ଭାଙ୍ଗି
ଫିଙ୍ଗିବାକୁ ଅମାର କୁହେଳୀ
କିଏ ଯିବ ଶୁଣିବାକୁ କିଏ ସେ ବୁଝିବ
ମୁଁ ଚିହ୍ନୁଛି ଯଦିଓ ତା' କଣ୍ଠସ୍ୱର
କିଏ ଯିବ ଶୁଣିବାକୁ
କିଏ ସେ ବୁଝିବ
ବନ୍ଧୁଜନ, କୁଟୁମ୍ବ ଓ ସାଇ ଭାଇ ଅଚେତ ନିଦ୍ରାରେ ।

ମୁଁ ଚେଇଁଛି ମୁଁ ଶୁଣୁଛି
ମୁଁ କିନ୍ତୁ
କାହାକୁ ଆଉ ଡାକିପାରୁ ନାହିଁ
ନିଶାରେ ମୁଁ ଟଳମଳ
ମୋ ପାଦରେ ଭାଙ୍ଗସରା ଭାଙ୍ଗିଗଲା ସଞ୍ଜବେଳେ
ଖୋସଣୀରୁ ଚିଲମ ପଡ଼ିଛି ଖସି
ମୋ ପାଟିରେ ଶବ୍ଦ କିଛି ପଇଟି ପାରୁନି
ମୁଁ ପଡ଼ିଛି ଅନ୍ଧାରୀ ରାସ୍ତାରେ
କେଉଁ ଘୁଙ୍ଗୁଡ଼ିମରା ନିର୍ଲିପ୍ତ ଷଣ୍ଢ ଯେପରି ।

ଇଚ୍ଛା ମୋର କଲବଲ
ଶୃଙ୍ଖଳା ଜିଭକୁ ଟାଣି ନିଶାର କବଳୁ
ଥରେ ଖାଲି ଚିତ୍କାର କରି ପାରନ୍ତି
" ଶୁଣିଛିରେ ତୋ ଡ଼ାକ ଶୁଣିଛି
ମୁଁ ତୋ ବାହନ ହେବି;
ମତେ ଥରେ ଉଠିବାକୁ ବଳ ଦେ
ରଡ଼ିପାଇଁ ସ୍ୱର ଦେ
ସାଇ ଭାଇ କହିଲେ କହନ୍ତୁ ପଛେ
ଅଶ୍ଳୀଳ, ଅଭଦ୍ର
ମତେ ଥରେ ସେମାନଙ୍କ ନିଦ ଭାଙ୍ଗିବାକୁ ଦେ !
ମୋହରାତ୍ରୀ କାଳରାତ୍ରୀ
କି ଦାରୁଣ ରାତ୍ରୀ
ଏକ ରାତ୍ରୀ କି ଆଶ୍ଚର୍ଯ୍ୟ
ହୋଇଛି ସହସ୍ର ରାତ୍ରୀ !

ମୁଁ ଖୋଜୁଛି ଆଉ ଥରେ ରଶ୍ମି ସକାଳର
ମୁହଁ ମାଡ଼ି ମାତାର ମୁକୁଳା ଛାତିରେ
ମାଆ ମୋର ମାଟି
ଏବଂ ରଶ୍ମି ମୋର ପିତା
ଆଉ ମୁଁ ମାନୁନି କେଉଁ ବଂଶାନୁକ୍ରମକୁ ।

ମୋ କାନେ ବାଜୁଛି ଆସି ସୃଷ୍ଟିର ଆଦିରସ
ଜଳ ଓ ସ୍ଥଳର ନିତ୍ୟ ରତିରେ
ଜନ୍ମ ମୋର ଉପକୂଳ ଫେନରାଶି ମଧ୍ଯୁଁ
ପ୍ରବୃତ୍ତିହିଁ ଧର୍ମ ମୋର
ଅର୍ଥର ଗୁଞ୍ଜନ କରେ କର୍ଣ୍ଣେ ସମୀରଣ
ସୃଷ୍ଟିରୁ ବିଳୟ ଅବଧି କାମହିଁ କାମ୍ୟ
ଏବଂ
ବିନ୍ଦୁପାତ ଆନନ୍ଦରେ ମୋକ୍ଷ ହୁଏନାହିଁ ।
ମୋ ନିଶା ଭାଙ୍ଗୁଛି ଧିରେ
ଶୋଷ ମୋତେ ଲାଗେ
ପାଣି ଟୋପେ କିଏ ଦେବ
ପାଣି ଏଠି ନାହିଁ ?
କାହିଁ ମୋକ୍ଷ, କାହିଁ ଶାନ୍ତି
କୋଉଠି ତୁ
କାହିଁ କାହିଁ ? ?
ମୋ ନିଦ ଭାଙ୍ଗୁଛି ସିନା
ରାତି ପାହି ନାହିଁ ।

•

ଏ କି ଆଚମ୍ବିତ କଥା !
କିପରି ସକାଳ ଇଏ ?
କି ଆଲୋକ ଚାରିଦିଗେ ମୋର
କି ରଶ୍ମୀ ଏ ! ସୂର୍ଯ୍ୟକାହିଁ ?
କାହାକୁ ଡ଼ାକିବି ଆଉ ସୂର୍ଯ୍ୟ ବୋଲି
ଉବୁଟୁବୁ କିରଣରେ ନିଜେ ମୁଁ କିରଣ
ସୂର୍ଯ୍ୟ ଦେଖାନାହିଁ !
କି ମାଟି ଏ ?
କାହାର ଛାତିରେ ଆଉ ମୁହଁ ମାଡ଼ି
ନିଶ୍ୱାସ ନେବି ମୁଁ ! ମାଟିର ତ ଗନ୍ଧ ମିଳୁନି
ମୁଁ ଭାସୁଛି ଦେହସାରା ମାଟି ବୋଲି ହୋଇ
ମୁଁ ମାଟିର ଅଣୁ ପରମାଣୁ
ବସୁନ୍ଧରା କାହିଁ ?
କି ପାଣି ଏ ?
କାହାର ଗର୍ଭରେ ଆଉ
ଖୋଜିବି ଶାମୁକା ଅବା : ନାଉକା ବାହିବି ?
ପାଣି ପାଣି
ରାତିସାରା ଡ଼ାକ ଛାଡୁଥିଲି ;
ଏକି କଥା, ଶୋଷ ନାହିଁ ସକାଳକୁ
ମୁଁ ନିଶ୍ଚିହ୍ନ ଜଳବିନ୍ଦୁ
ମହାସିନ୍ଧୁ କାହିଁ ?
ମୁଁ ହେଲି ପବନ ପୁଣି
ହୋଇଛି ମୁଁ ସମସ୍ତ ଆକାଶ
ମୁଁ ଖୋଜୁଛି ଇତିହାସ
କିଛି ମିଳୁନାହିଁ
କିବା ଥିଲା ନାମ ମୋର ମନେ ପଡୁନାହିଁ ।

ମୁଁ କିବା ହୋଇଲି ପ୍ରେତ
ଅପେକ୍ଷା କରିବି ଖାଲି
ମହାଳୟା ପିଣ୍ଡ ପାଣି ଲାଗି ?
ହାୟ ମୋର ସାଇ ଭାଇ
ହାୟ ଯେତେ ଜ୍ଞାତି ଓ କୁଟୁମ୍ବ
କିଏ କାହିଁ ? କେହି ଦେଖା ନାହିଁ !
ମତେ କି ଚିହ୍ନୁନ କେହି ?
ନାମ ପାଇଁ ସୃଜିଥିଲି ଅଟ୍ଟାଳିକା
ବାଣ୍ଟିଥିଲି ଅସଂଖ୍ୟ ପଦବୀ
ପିନ୍ଧିଥିଲି ପ୍ରତିଷ୍ଠାର ସନ୍ତକଭରା ଉଜ୍ଜ୍ୱଳ ପୋଷାକ ।
କାହିଁଗଲ....ସଖା ମୋର ପୁତ୍ର ମୋର
ପତ୍ନୀ ଏବଂ ଭୃତ୍ୟ ସବୁ.....
ସଭିଏଁ କି ମୃତ ଆଜି ?
କେଉଁ ନାମେ ଡାକିବି ମୁଁ
ନାମ କିଛି ମନେ ପଡୁନାହିଁ ।
କିଏ ଆଉ ମଡ଼ା ଭାଇ ତୁମ ସହ ସାଥି ହେବ
ସ୍ୱର୍ଗଦ୍ୱାର ଯାଏଁ ?
କିଏ ମୋତେ ପିଣ୍ଡ ଦେବ ?
ସତେ ତ ! କାହା ନାମେ ପିଣ୍ଡ ଦେବ ତୁମେ ?
ପିତା ଅମୁକ ଦାସ...... ପ୍ରପିତା ବଳଭଦ୍ର ଦାସ
ପ୍ରପିତା-ମହ ଜଗନ୍ନାଥ ଦାସ ???

ନାଇଁ..... ନାଇଁ.....
ମୁ ତ ହେଇନି ପ୍ରେତ
ହେଇ ଚୁମଟିପାରେ ମୋ ଦେହକୁ
ମୋ ପାଦ ଦିଶୁଛି ମୋତେ,
ନାମ ମୋର ଖାଲି ଯାହା
ଝଡ଼ିଯାଇ ସାପକାତି ପରି
ଚାଲିଗଲା ଆପେ ଆପେ
ସ୍ୱର୍ଗଦ୍ୱାରେ ଜଳିଯିବା ପାଇଁ ।

ନାମ ମୋ ଜଳୁଛି ଏଇ
ଖଣ୍ଡି ଖଣ୍ଡି ମାଂସ ହାଡ଼ ଜଳି
ଝରି ଝରି ପଡ଼େ
ଧୂଆଁ ଧୂଆଁ ଧୂଆଁର କୁଣ୍ଡଳି
ଆଉ କିଛି ନାହିଁ ।
ସେ ଧୂଆଁ ଛୁଉଁଛି ମୋତେ
ଘୂରି ଘୂରି ମୋ ଭିତରେ ମୁଁ କୁ ମାରୁଛି
ଆଃ....... କି କମ୍ପନ
ଶିହରଣ କିପରି ଏ ?
ଚକ୍ଷୁ ଉନ୍ମୁକ୍ତ-
ଧୂଆଁକୁ ମୁଁ ଚୁମ୍ବନ କରୁଛି ଧୂଆଁକୁ ନ ଚାହିଁ ।
ତା' ପରେ ଦେଖୁଛି ଖାଲି.......
ରତି ରତି ରତି ରତି.............
ରତି ମୋର ଚତୁର୍ଦ୍ଦିଗେ
ପବନ କରୁଛି ରତି ପୃଥିବୀ ସହିତ
ସାଗର ହସୁଛି ଲୋଟି ମୁକୁଳା ବାଲୁରେ
ପାହାଡ଼ ବାହୁ ବନ୍ଧନେ ବଉଦ ମାତିଛି
ଫୁଲେ ଫୁଲେ ଭ୍ରମର ଗୁଞ୍ଜନ
ପ୍ରକୃତିର ଋତୁ ସବୁ
ଏକାକାର ହୋଇ
ରତିପାଇଁ କରିଛନ୍ତି ନାରୀକୁ ବି ଋତୁମତୀ ।

ସେ ନାରୀ ଡାକୁଛି ହାତଠାରି
ପୁରୁଷକାରକୁ ମୋର
ଏକାକାର ହେବାଲାଗି
ମୁଁ ଜାଣିନି କି ବା ନାମ ସେ ନାରୀର
ମୋ ଶିରା ଉପଶିରା ସବୁରେ
ଝଣ୍ ଝଣ୍ କରେ
କେଉଁ ଏକ ଝରଣାର ସୂକ୍ଷ୍ମ ସଙ୍ଗୀତ:
ମୋ ପାଦରେ ତାଳ

ମୁଁ ନାଚୁଛି ସେ ନାଚୁଛି
ଉଭୟେ ନାଚୁଛୁ ମନ ଭରି
ଏକ କାଠ ଗରିଣ୍ଡାର ଚାରିପଟେ
ଘୁରି ଘୁରି ଘୁରି ଘୁରି......ଘୁରି ଘୁରି ।

ମୁଁ ଜାଣିନି କିବା ନାମ ସେ କାଠର
କେଉଁ ଗଛ କାଠ ସିଏ
ନାମ କିସ ସେ ଗଛର
କି ନାମ ସେ ଦାରୁଟାର ?
ନାଇଁ ନାଇଁ ନାଇଁ ନାଇଁ ନାଇଁ ନାଇଁ
ନାଇଁ ନାମ
ନାଇଁ କିଛି ନାମ ସେ ମେରୁର ।

# ପ୍ରଥମ ଅଧ୍ୟାୟ

ଜନ୍ମ ଯଦି ବଞ୍ଚିବାର ପାଇଁ
ବଞ୍ଚିବାର ଅର୍ଥ କି ଖାଲି
ନଇଁ ନଇଁ ସଲାମ କରିବା
ଦୁଇମୁଠା ଅନ୍ନ ପାଇଁ
ଦୁଇହାତ ବସ୍ତ୍ର ପାଇଁ
ଜୀବନଟା ଗୋଲାମୀ
ଓ
ମଣିଷର ଆତ୍ମାକୁ ବି ଗୋଲାମ୍ କରିବା ?

ଶୁଣହେ ସ୍ୱଜନ ସବୁ !
ମୁଁ ଚାଲିଲି ଯୋଗୀ ହୋଇ
କେନ୍ଦେରାଟା ମତେ ଦିଅ
କଉପୁନି ଖଣ୍ଡେ ଦିଅ
ପଞ୍ଚମୁଖୀ ରୁଦ୍ରାକ୍ଷର
ମାଳା ମୋର ଗଳେ ଦିଅ
ରାଜା-ନହରର ସିନା ନୟନ ସଂଙ୍ଖାଳି ନୁହେଁ
ବିଧବା ମା'ର ମୁହିଁ ଏକହିଁ କୁମର
ମୋ ମଥାରେ ଜମାଅଛି
ବର୍ଷ ବର୍ଷ ସାଧନାର ଲୁହର ଚଅଁର ।

ଆଲୋ ବୋଉ !
କାହାପାଇଁ ପଣତ ଲୁଣିଆ କରୁ
ମୁଁ ତ ସନ୍ତାନ ସବୁ ଦୁଃଖି ମଣିଷର
ମତେ ଅଛି ଯିବାପାଇଁ ପଥ ବହୁଦୂର

ଦ୍ୱାରେ ଦ୍ୱାରେ ଗୀତଗାଇ
ବୁଲିବାକୁ ହେବ
ଯଦି ଓ ଜାଣଇ ମୁହିଁ
ଥାଳ ମୋର ଶୂନ୍ୟ ହିଁ ରହିବ ।

ଦୁନିଆର ଯେତେ ପାପ
ସବୁ ମୋ' ହାତରେ ନେଲି
ଦେହରେ କଳଙ୍କ ବୋଳି
ମନର ମହୁଲ ଫୁଲକୁ
କାହା କାନି କାହାର ଜୁଡାରେ ଦେଲି
ମେରୁକୁ ଖୋଜିଲି ମୁହିଁ
ନାଚି ନାଚି ଦାରୁ ଚାରିକରେ
କିଏ ଉଣ୍ଡି, କିଏ ବା ନିଶାନି ମୁଣ୍ଡା
କିଏ ମୋର ଗ୍ରାମ ଘର
କାହିଁ କିଛି ଦେଖି ନପାରିଲି !

ଯେବେ ବି ଚାହିଁଲି ତୋର
କଳାକଳା ମୁହଁଟାକୁ
ହସରେ, କାନ୍ଦରେ, ଜୀବନର ଗୌରବରେ
ଲାଞ୍ଛନା, ବେଦନା ଅବା
ଅପବାଦ ନାଗରା-ପିଟାରେ
ସବୁରେ ତୋ ମୁଖେ ହସ
ଚକାଡ଼ୋଳା ଖୋଲା ଖୋଲା
ସବୁରେ ମୁଁ ଆବା କାବା
ସବୁ ଶେଷେ ଗୀତ ବୋଲା-
"ତୁହି ହୃଷିକେଶ ହୃଦୟେ ରହି
ଯେପରି ଚଲାଉ ସେପରି ଯାଇ ।"

କାହିଁକି ଯେ ଜନ୍ମନେଲି
ଜାଣେ ନାହିଁ ମୁହିଁ
କାହିଁକି ବଞ୍ଚିଛି ପୁଣି
ମୁହିଁ ବୁଝି ନାହିଁ
ଏ ପାଖେ ବିଶ୍ୱାସ ନାହିଁ
ସେ ପାଖେ ଶପଥ ନାହିଁ ।

ମୁଁ ଦୋହଲେ ବାୟା ବସାରେ
ପବନ ଭରସା ନାହିଁ ।
ପିତା, ମାତା, ପତ୍ନୀ, ପୁତ୍ର, ବନ୍ଧୁ, ସହୋଦର
ସଭିଙ୍କୁ ଫିଙ୍ଗାଡ଼ି ପଛେ
ଯିବାକୁ ମୁଁ ପାଦତୋଳେ
ଦୂରଦେଶ ପଥ ବହୁଦୂର
ଭାବକୁ ନିକଟ ଯଦି
ରାସ୍ତା ହେବ ଲମ୍ବା କିପରି ?
କିପରି ଏ ଜଳାତଙ୍କ, କିପରି ପବନ ଭୟ
କିପରି ବା' ଭୋକ ଶୋଷ
ଶତୃତାର ମରୀଚିକା ?
ମୋ ପାପ ମୁଁ ହାତେ ନେଇ ଚାଲିଯିବି
ଶତୃମିତ୍ର କାହାକୁ ମୁଁ ଭାଗୀ କରୁନାହିଁ
ଭାଗୀଦାର ଯେତେ ସବୁ
ମୋ ଆନନ୍ଦ, ସୁଖ ସମୟର
କାହାକୁ ମୁଁ ଯିବା ଲାଗି ସଙ୍ଗେ ଡାକୁ ନାହିଁ ।

# ଦ୍ୱିତୀୟ ଅଧ୍ୟାୟ

ଏହିକିରେ ଇଛା ତୋର
ଏକା ଏକା ହେଉଥିବୁ
ଆମେ କଲବଲ ?
ତେବେ କିଆଁ ମେଲେଇଲୁ
ଆଲିଙ୍ଗନ ଲାଗି ସେହି ବିପୁଳ ଭୂଜକୁ !
ତୋ ବାହୁ ବନ୍ଧନେ ସିନା
ହାଉଯାଉ ହେଉଥା'ନ୍ତୁ ଆମେ
ଗୀତ ଗାଇ ନାଚୁଥା'ନ୍ତୁ,
ଏ କି କହିଲୁ ତୁହି
ଆମେ ଖାଲି ଆଶା କରୁ
ଅପର ରକ୍ତକୁ ?

ବିଶ୍ୱାସର ନାଦ ମୁଣ୍ଡେ
ଶ୍ରୀଚୁମ୍ବନ ଦେଇ ଦେଇ ଅଙ୍ଗ ଥକି ଗଲା
ଦୁର୍ବଳ ହେଲା ସ୍ନାୟୁ
ମୁଁ ଭାସିଲି ସ୍ୱେଦର ନଦୀରେ
କାହିଁ ତୋ ବାହୁ ବନ୍ଧନ ନିବିଡ଼ ହେଲାନି
'ଜୀବଧନ'-କହିବା ତ
କାହିଁ କେତେ ଦୂରେ !
ବୁଦ୍ଧି ସବୁ ଝଡ଼ା ହେଲେ
ବୁଦ୍ଧମାନେ ମରିହଜିଗଲେ
ଆଉ ବାକି ଯାହା ବା ଭରସା
ସେ ସବୁ ନିସାଡ଼୍ ହେଲେ.......

ଜାଙ୍ଗୁଲୁ ଜାଙ୍ଗୁଲୁ ରାତି
ପଥ ସାରା ଘଞ୍ଚ ଅରଣ୍ୟ
କଣ୍ଟକିତ ଲତାଗୁଳ୍ମ ରକ୍ତ ଶୋଷେ
କଉପୁନି ଚିହ୍ନ ନାହିଁ ଆଉ
ନଗ୍ନ ଶରୀର ନେଇ ପାଦ ଟେକୁଛି ମୁଁ
ଅପେକ୍ଷମାଣ-ଅଜଗର ପାଟି ଭିତରକୁ
ମୋତେ ପଛେ ସର୍ପଖାଉ
ମୋ କୂଳେ କଳଙ୍କ ନରହୁ ।

କି ଆଶ୍ଚର୍ଯ୍ୟ !
ଅଜଗର ଗିଳି ନ ପାରି
ଭିଡ଼ିମୋଡ଼ି ଯେତେ ହେଲେ
ହାଡ଼ ମୋର ଭାଙ୍ଗି ନ ପାରଇ
ଅଜଗର କ୍ଲାନ୍ତ ଏବଂ
ମୋ ବେଦନା ଅତୀବ ଅସହ୍ୟ
ଯୋଗୀ ହେବା ଲାଗି ଆଉ
କେତେ କ୍ଷମା - କେତେ ଦୟା ଦରକାର
ବୁଝି ପାରୁନାହିଁ
ମାୟାଛାଡ଼ି ଆସିଥିଲି
ଅରଣ୍ୟ ସେ ପାରେ ସିନା
ମାୟା ମୋତେ ମୋଟେ ଛାଡୁନାହିଁ ।

ବିକଳ ହାତ ମୋ ଖୋଜେ
ଆଶାବାଡ଼ି ଅନ୍ଧାର ଭିତରେ
ମୁଁ ନିର୍ଗତ
ଅଜଗର ମୁମୁର୍ଷ ମୁଖରୁ
ଅଜଗର ମୃତ ଏବଂ
ମୋ ହଂସା ଉଡ଼ି ଉଡ଼ି ଯାଏ
ତା'ପରେ ଜାଣିଛି ମୁହିଁ
ରାତି ଗଲେ ସକାଳ ହିଁ ହୁଏ !

ଏ ସକାଳ-
ନୂତନ ଆଶାର ସକାଳ
ସୂର୍ଯ୍ୟ ଜନ୍ମେ ଲତାଗୁଳ୍ମ ପତର ଫାଙ୍କରୁ
ମୋ ଦେହରେ ଜୀବନିକା
ମୋ ମୁଖ ଜଳ ସିଞ୍ଚିତ
: କିଏ ସେ ରମଣୀ ତୁମେ
ଅଚିହ୍ନା, ଅଜଣା
ମତେ ମୋର ସ୍ମୃତି ଦେଇ
ଉଡ଼ା ହଂସା ଫେରସ୍ତ ଆଣିଲ ?
: ରମଣୀ ନୁହେଁ ମୁଁ ଯୋଗୀ
ନିଷିଦ୍ଧ ମୋ ପାଇଁ ରମଣ
ସତେ ଅବା ବୈଧବ୍ୟ ମୋ
କପାଳେ ଲିଖନ

ମୁଁ ଧରିତ୍ରୀ !
ବରିଅଛି ନବଯୁଗେ ନବ-ଯୋଗୀ
ବିକଳ ପ୍ରାଣରେ
ତା'ପରେ ତମେ ହିଁ ଆସିଛ
ଜଠରରୁ ମୋର ନଅଥର ନଅ-ଅବତାରେ
ଉଶ୍ୱାସ କରିବା ପାଇଁ ଭାରା ମୋର
ଧର୍ମର ଗ୍ଲାନିରେ ।

କିନ୍ତୁ ହାୟ !
ତପାରଢ଼ ଅବସ୍ଥାରେ ସଭିଙ୍କୁ ଭକ୍ଷିଣ
ଅଜଗର ବଂଶ ମତେ
ଚିରକାଳ ବିଧବା ରଖିଲେ ।

: ରକ୍ତ ମୋର ଟକମକ ଫୁଟେ ଯୋଗୀ
ମୋ ସହ ରମଣ କର
ଗର୍ଭୁ ମୋର ଜାତ ହେବ

ସଂହାର କର୍ତ୍ତା - ମୁଁ ଜାଣେ
ଭଗ ମୋ ଆଶାୟୀ ଅଛି
ନଅଟି ସନ୍ତାନ ହାରି
ଆଜି ମୁହିଁ ଦଶମର ସ୍ୱପ୍ନ ଦେଖୁଛି ।

ତା' ପରେ-
ଆକାଶ ଧୁମାୟିତ ହେଲା
ମୋ ପାଦର କ୍ଷତ ମୋତେ
ଜଣା ନପଡ଼ିଲା
ପବନ ସ୍ତମ୍ଭୀତ ଏବଂ
ସ୍ଥିର ହେଲା ଝରଣାର ଜଳ
ଶୁଭିଲାନି ପକ୍ଷୀଙ୍କ କାକଳି
ମାଟି ହେଲା ଆଶାରେ ବିକଳ
ବୃକ୍ଷଲତା ସାନ୍ଦ୍ର ହେଲେ
ରକ୍ତପରି ଲାଲ୍ ସୂର୍ଯ୍ୟ
ଧୂଆଁରେ ଗୋଳେଇ ହୋଇ
ହଠାତ୍ ନିଶ୍ଚିହ୍ନ ହେଲେ ।

: ହେ ମହାଶୁଦ୍ରାଣୀ !
ତୁମ ଇଚ୍ଛା ପୂର୍ଣ୍ଣ କଲି ମୁହିଁ
ସହବାସ ପରେ ମୋର
ନମସ୍କାର ଘେନ
ଗର୍ଭରେ ତୁମ ବିନ୍ଦୁ ଠୁଳ ହେଲା
ମୁଁ ନିମିତ୍ତ ମାତ୍ର ସିନା
ମ୍ଲେଚ୍ଛ ନିଧନ ପାଇଁ ।

# ତୃତୀୟ ଅଧ୍ୟାୟ

କୁଆଁ କୁଆଁ ରାବ ଶୁଭେ
ଆକାଶ, ସାଗର, ମାଟି ଜଙ୍ଗଲ ଝାଟିରୁ
ଉଲ୍‌କା ଖସେ ଗୋଟା ଗୋଟା
ଲଜ୍ଜାତାରା ଆଲୋକ ବାଣ୍ଟଇ
କିଏ ସିଏ ଜନ୍ମ ନେଲା
ଶବ୍ଦ ଖାଲି ଶୁଭେ ସିନା ଶିଶୁ ଦେଖା ନାହିଁ ।

ଚତୁର୍ଦ୍ଦିଗେ ହା' ହତାଶମୟ
ଦୁର୍ନିତିରେ ସମାଜ ଅଚଳ
ରାଜନୀତି-ବେଶ୍ୟାବୃତ୍ତି କରିତ୍‌କର୍ମାଙ୍କର
ବେଶ୍ୟାପଡ଼ା ଉଛୁଳି ଉଠୁଛି,
ନର୍ଦ୍ଦମାରୁ ଭୋକିଲା ମଣିଷ
ଗଣ୍ଡେଖାଇ ଦଣ୍ଡେ ଜିଇବାକୁ
ଭାତ ଅଣ୍ଡାଳୁଛି ।

ଯୋଗୀମାନେ ପୃଥ୍ୱୀଲାଗି ବ୍ୟସ୍ତ ହେବା ବେଳେ
ନେତାମାନେ ପାକୁଳି ପାକୁଳି ପାନ
ଥୁକ ଫିଙ୍ଗୁଥିଲେ
ସେମାନଙ୍କ ହସରୋଳେ ଜନପଥ ଭରୁଥିଲା
ଏବେ କିନ୍ତୁ ଭାଳେଣି ପଡ଼ିଛି
କାହାର ଏ କୁଆଁ ଶବ୍ଦ
କିଏ ଆଣି ରଖିଗଲା ଚାଣ୍ଡାଳକୁ
ଗରାଖଙ୍କ ସରାଗ ଭାଙ୍ଗୁଛି ।

ନିଶାତଳ ନିଶ୍ଚୁପ କାହିଁକି
ରୋଷଘର ଚୁଲି ଯେ ଅଜଳା
ପୂଜାପଣ୍ଡା କାହିଁ ଗଲେ
ଜୟ ବିଜୟର ଦ୍ୱାର ଖୋଲୁନାହିଁ କିଆଁ
ଗମ୍ଭୀରା ଭିତରୁ କିପରି ହ୍ରେଷାରବ ଶୁଭେ
କିଏ ସିଏ ଲଗାଇଲା ମନ୍ଦିରରେ ନିଆଁ ?

ଶୀତଳାର ମୂର୍ତ୍ତୀ ଉଠେ
ସୁନାକୁଅ ଝଲମଲ ଦିଶେ
ବାରହାତ ଖଣ୍ଡା ନାହିଁ
କିଳିକିଳା ରାବ ଶୁଭେ
କଳ୍ପବଟୁ ପତ୍ର ଯାଏ ଝଡ଼ି
ଭୂଷଣ୍ଡ କାକ ଉଡ଼ିଲା
କଳା ଡ଼େଣା ଫଡ଼ଫଡ଼ କରି
କଳାଡ଼େଣା ଛାଇଯାଏ
ଦିନ ହୁଏ ଅମାବାସ୍ୟା ରାତି
ମେଘ ହୀନ ଆକାଶରେ ବିଜୁଳି ଚମକେ
ଘଡ଼ ଘଡ଼ି ଶବ୍ଦ ଶୁଭେ
ଅକାଳ-ଚଡ଼କ ପଡ଼ି ମେଘନାଦ ପାଚେରୀ ଭାଙ୍ଗଇ
କିଏ ସେହି ଅଶରୀରି
କାହା ହାତେ କରବାଳ
ଜନପଥେ-ଘୋଡ଼ାଟାପୁ ପ୍ରଳୟର ଶବ୍ଦ କରେ
ରକ୍ତ ନଦୀ ବନ୍ୟା ଛୁଟିଛି
ମଣିଷ ମନରେ ମ୍ଲେଚ୍ଛ
ମଣିଷ ହିଁ ମଣିଷକୁ
ମ୍ଲେଚ୍ଛ କରିଛି ।

ରାଜଧାନୀ ଦୁଲୁକଇ
ନେତାଙ୍କ ହାଲୁକ ଶୁଖେ
କାହାର ଖୋସଣୀ ଖସେ
କାହା କେଶ ମୁକୁଳା ଲୋଟଇ

ଧାଅଁ ବନ୍ଧୁ, ସଖା, ସହୋଦର
ପେଡ଼ି ପୁଞ୍ଜି ଭାସି ଯାଉପଛେ
ଚାଲ କାହିଁ ନିକାଞ୍ଚନ ଦ୍ୱୀପେ ଚାଲିଯିବା
ଆମତୋଳା ସମସ୍ତ ଅଟ୍ଟାଳି ଝୁଲଇ ।

: ଆହେ 'ବାବା', ମା' ମାନେ-କାହିଁଗଲ
କାହିଁଯିବୁ କହିଯାଅ ଭଲା
ଚାରିଆଡ଼େ ରକ୍ତ, ରକ୍ତ-ପଥ ଦିଶୁନାହିଁ
ଚାରିଆଡ଼ ଅନ୍ଧକାର-ବୁଦ୍ଧି ପାଉନାହିଁ
ପଥଧାରୁ ରକ୍ତ ନଦୀ ଘରେ ପଶିଲାଣି
କାଳ ପିଏ ନିଜ ରସ
ଏତିକି ଯା' ଆମେ ବୁଝିଲୁନି !

କାହିଁଗଲା ବାଣୀ ସବୁ
କାହିଁଗଲା ନାମ ଓ ଆଶ୍ରମ
ଯନ୍ତ୍ର, ମନ୍ତ୍ର, ତନ୍ତ୍ର ପାଇଁ ନିର୍ବାଚନ ବେଳେ
କେତେ ଧନ, କେତେ ଜନ
ଆମେ ଠୁଳ ନ କରିଲୁ
ଦେହ, ମନ, ସମୟ ତର୍ପଣ କଲୁ
ନିଜ ଘରୁ ମାଟି ତଳୁ
ସୁନା ହାଣ୍ଡି ନଖୋଜି ଯା'
ପରଘର ତିଅଣର ସୁଆଦ ଚାଖିଲୁ !

: ଇଏ କିଏ ରକ୍ତରେ ଭାସଇ ?
ଇଏତ ଧରମ ଦାସ
ମହାସେଠ, ବଡ଼ ଗଦ୍‌ଦି ବିରାଟ ଥନ୍ତଲ ପେଟ
ଜୀବନ ସାରା ଯେ' ଖାଲି
ନଳକୁ ତଳ-ମୁହାଁକରି
ତେଲ ମାପିଛି ଯତ୍ନ କରି
ଧନରୁ ତାର ଅଂଶ ନେଇ
ଆମେ କିଣିଛୁ ସାଇ ସାଇ
ଆମେ ବସିଛୁ ସିଂହାସନେ
ଲୋକଙ୍କୁ ଭୋକୁଆ ବନେଇ ।

ଧରମ ଦାସର ପେଟ ଯେତିକି ବଢ଼ିଛି
ରାଜ୍ୟରେ ଲୋକଙ୍କ ପେଟ
ସେତିକି ଶୁଖିଛି
ଆମର ଗରାଖ ବୋଲି କେହି ତାକୁ ଛୁଇଁ ପାରିନାହିଁ
ହାୟରେ ଧରମ ଦାସ !
ଆଜି ତତେ କେହି ହେଲେ ରକ୍ଷା କଲେ ନାହିଁ ?
: କି ନ ଦେଖେ ଏ ନେତ୍ର ହାଏ
ମାଧବ ମିଶ୍ରଙ୍କ ପରାଏ
ପାଟ, କୁଣ୍ଡଳ ଦିଆ କବି
ରକ୍ତ ସୁଅରେ ଭାସିଯାଏ !
"ଅନ୍ନ ବିହୁନେ ହଂସହାନି
ଯୋଗ ସାଧିବି କାହା ଘେନି ।"
ଜୀବନେ ଏଇ ବ୍ରତ ନେଇ
ନାଚିଛି ଯିଏ ଥେଇ ଥେଇ
ପଦ, ପଦବୀ ପୁରସ୍କାର
ମଞ୍ଚ ଓ ଥାଳି ଫୁଲମାଳ
ଆମେ ଭରିଛୁ ତା'ର ଗଳେ
ଯେଣୁ ସେ ଆମ ଗୀତ ବୋଲେ
କୁହ ମାଧବ ! ଏକି ହେଲା
ଚିନ୍ତା କି ତୁମ ଫମ୍ପା ଥିଲା
ସୋଲ ତ ବୁଡ଼ି ଯାଉଅଛି
ପଥର କିପରି ଭାସିଲା ?
: ଉଜ୍ଜଳ ସନ୍ତକ ଲଗା
କାହାର ପୋଷାକ ଇଏ
ରକ୍ତ ଜୁଡୁ ବୁଡୁ !
ତୁମର ଏ କି ଅବସ୍ଥା କର୍ମଚାରୀ ଦଳ
ନଥିଲା କି ଗୁଳି ଗୋଳା
ନଥିଲା କି ହାକିମ ତୁମର ?

ତୁମକୁ ବାରିସି କରି
ଦୁନିଆକୁ ମଞ୍ଚ ଯାଏଁ
କେତେ ନ ଚାଖିଛୁ
ପେଟ ଚାଖଣ୍ଡକ ପାଇଁ
ଆସିଥିଲି ସମୟ ବିକ୍ରୟ କରି
ଆମେ ତୁମ ଆତ୍ମାକିଣି
ମଣିଷଙ୍କୁ ଚାବୁକ୍ ମାରିଛୁ ।
କାହିଁତୁମ ବେତବାଡ଼ି
କାହିଁତୁମ ଜିପ୍‌ଗାଡ଼
କାହିଁ ତୁମ ହାତକଡ଼ି
କାହିଁ ସେ ଟୋପି ପଗଡ଼ି
ସବୁ କି ଗଲା ଉଜୁଡ଼ି
ରକ୍ତର ସୁଅରେ ?
କୁହ କୁହ ପାତ୍ର ମନ୍ତ୍ରୀ କଟୁଆଳ ଦଳ
ଶବ ସବୁ ତୁମର କି ବ୍ୟବହାର କରିବାକୁ
ଲେଖାନାହିଁ ଚାକିରୀ ସର୍ତ୍ତରେ ?
: ପାଦତଳ ମାଟିଯାଏ ଧସି ଧସି
କାହାପାଖେ ଆପତ୍ତି କରିବୁ
ଲାଲି କୋଠା ଭୁଷୁଡ଼ି ପଡ଼ିଛି
ଆମ କିଣା କାଜିମାନେ କାହିଁଗଲେ
ସଭିଁଏ କି ଭାସିଗଲେ
କଳାକୁ ବା ଧଳା କୁହ କିଏ ସେ କରିବ
ଓକିଲଖାନା ତ ନାହିଁ
ଆମ ଗଢ଼ା ସମସ୍ତ ଆଇନ ଭାଙ୍ଗିଛି ।
: ଆଉ କେହି ଦିଶେ ନାହିଁ
ଢ଼ୋକ ଢ଼ୋକ ରକ୍ତପିଇ
କେତେ ଆଉ ସମ୍ଭାଳିବୁ
ଆମେ ଦାୟୀ ଆମ ଅନ୍ତଲାଗି
ଏତିକି ପ୍ରଚାର ପାଇଁ
କାହାକୁ ବା ମାଧ୍ୟମ କରିବୁ ?

ଚକୁଳିଆ ପଣ୍ଡାଙ୍କର ଖବରକାଗଜ ନାହିଁ
ଭଡାଖିଆ ଖମାରୀଙ୍କ ବେତାର-କେନ୍ଦ୍ର ନାହିଁ
କେଉଁଠି ତ କିଛି ନାହିଁ
ନାହିଁ ନାହିଁ-ସବୁ ଖାଲି ନାହିଁ
ପାପର ପ୍ରାୟଶ୍ଚିତ୍ତ ପାଇଁ
ଗୀର୍ଜା, ମନ୍ଦିର, ମସ୍‌ଜିଦ୍ ନାହିଁ
ଆମ ପାପ ଆମେ ନେଇ ବୁଡିଲୁ ଏଥର
ଶୋକ-ସଭା କରିବାକୁ
ଆମ ହାତେ ବେଳ ମଧ୍ୟ ନାହିଁ ।

# ଚତୁର୍ଥ ଅଧ୍ୟାୟ

ଅନ୍ଧକାର କଳା କଳା
ଅଲୌକିକ ରହସ୍ୟ-ମେଖଳା
ତା' ଭିତରେ ଶବ ନାହିଁ
ରକ୍ତ ସୁଅ ଛାପ ନାହିଁ
ଶାନ୍ତ ଧରିତ୍ରୀ ଏବଂ
ଯୋଗୀଙ୍କର ଚିତ୍ର ନାହିଁ ।

କିଏ ମୃତ, କିଏ ସେ ଜୀବିତ
କିଏ ବସ୍ତୁ, କିଏ ବା ଅବସ୍ତୁ
ସବୁ କିଛି ଏକତାଳ
ସବୁ କିଛି ସମତଳ
ସତ୍ୟ ଯେ ରହସ୍ୟ ପୁଣି
ରହସ୍ୟ ହିଁ ଅନ୍ଧକାର ।

ମୁଁ ଭାସୁଛି ଅନ୍ଧାର ଭିତରେ
ଅନ୍ଧାରକୁ ଛୁଇଁ ପାରୁନାହିଁ
ଅନ୍ଧାର ମୋ ଭିତରେ ବାହାରେ
ଆପେ କିନ୍ତୁ ବୁଝିପାରୁ ନାହିଁ ।
ଅନୁଭବ କରୁଛି ଯା' ସତ୍ତାଖାଲି
ନିତ୍ୟ-ସ୍ପନ୍ଦନର
ଭୋଗିଲିଣି ଯଥେଷ୍ଟ ଜନ୍ମ ଯନ୍ତ୍ରଣା
ଆଲୋକ ଦେଖାଅ ହେ ଅନାମ !
ପୃଥ୍ୱୀ ଦିଅ ମୋର ।

: ଅନାମ ମୁଁ ଅନାମ ମୁଁ
ସର୍ଜନାର ପ୍ରଥମ ଓ ଅନ୍ତିମ ଅନାମ
ରୂପ ନାହିଁ, ରଙ୍ଗ ନାହିଁ
ଯୌବନ ବା ଜରା ନାହିଁ ମୋର
ଶବ୍ଦରୁ ଆରମ୍ଭ ଏବଂ ଶବ୍ଦେ ଅନ୍ତ ମୋର
ମୁଁ ମୋ ଦର୍ଶନ
ଅବା ମାନସ ଗୋଚର ।
: କିପରି ଆଲୋକ ଚାହଁ
ହେ ନବ ଜାତକ !
ଯେପରି କହିବ ମୁହିଁ ସେପରି ସୃଜିବି
ଏ ସର୍ଜନା ଅନ୍ତିମ ମୋର
ତା' ପରେ ମହା-ପ୍ରଳୟ
ଏବଂ
ମୋ ଭିତରେ ନିଜକୁ ମୁଁ
ଆତ୍ମସ୍ଥ କରିବି ।

: ମୁଁ ଚାହୁଁଛି ଏପରି ଦୁନିଆ
ଦେଇକି ପାରିବ ଅନାମ !
ଯେ' ଦୁନିଆର ଆତ୍ମା ହେବ
ମଣିଷ-ପଣିଆ
ମଣିଷ ମଣିବ ଯହିଁ ଅପରକୁ
ଆପଣା-ଭଳିଆ ।
ରକ୍ତ ନୁହେଁ-ରୂଚିଯହିଁ
ସମ୍ପର୍କର ହେବ ମଳଦୁଆ ।

ରୂଚି ଯହିଁ ପ୍ରେମ ହେବ
ପ୍ରେମ ହେବ ଅନ୍ତରର ଭାଷା
ଭାଷା ଯା'ର ମୈତ୍ରୀ ଏବଂ
ପିପାସା ତ ଶାନ୍ତି ପାଇଁ

ଶାନ୍ତି ହେବ ଅନନ୍ତ ଭରସା
ଭରସା ଯା' ଛନ୍ଦା ଛନ୍ଦି ଅସଂଖ୍ୟ ହାତର
ହାତ ଯାହା ଆଶ୍ରା ଖାଲି
ଅପରକୁ ସାହାସ ଦେବାର
ସାହାରା ହେବନି ଯହିଁ
ଶୋଷଣର ଭୂଇଁ
ଶୋଷଣ ସେ ଦୁନିଆର ଅଭିଧାନେ
ଶବ୍ଦ ହେବ ନାହିଁ
ମନୁଷ୍ୟ ସମ୍ପୂର୍ଣ୍ଣ ଯହିଁ ନିଜ ପ୍ରତିଭାରେ
ବ୍ୟକ୍ତି ବା ଗୋଷ୍ଠି କେହି ଶାସକ ନୁହଁଇ
ଶାସକ ବିବେକ ହେବ
ବିବେକ ଯା' ମୈତ୍ରୀ ଉପାସକ
ପୂଜା ନାହିଁ, ମନ୍ଦିର ନାହିଁ
ମଞ୍ଚ ନାହିଁ, ନାହିଁ ଫୁଲମାଳ
ପ୍ରବୃତ୍ତି ହିଁ ଧର୍ମ ଏବଂ ଫୁଲ ହେବ
ଏକ ମାତ୍ର ପ୍ରେମର ପ୍ରତୀକ !
ମୁଁ ଚାହୁଁଛି ଏପରି ଦୁନିଆ
ଯେ ଦୁନିଆ ରୁଦ୍ଧ ନୁହେଁ
'ଅହଂ'-ନର୍ଦ୍ଦମାରେ
'ମୁଁ' ମୃତ 'ଆମ' ପାଇଁ
ଚିନ୍ତା ଚେତନା ଏବଂ କର୍ମରେ ।

ମୁକ୍ତ-ମଣିଷର ଏକ
ମୁକ୍ତ ସଂସାରର ସପ୍ନ
ମୁଁ ଦେଖୁଛି ଏଇ ଅନ୍ଧକାରେ
ଦେଇ କି ପାରିବ ଅନାମ !
ରଙ୍ଗ କି ପାରିବ ଦେଇ
ମୋହରି ସ୍ୱପ୍ନରେ ?

ତା'ପରେ ହଠାତ୍-
ଅନ୍ଧକାର କାହିଁ ହଜିଗଲା
ଆକାଶରେ ସୂର୍ଯ୍ୟ ନାଚିଲା
ପବନ ବହିଲା ଧିରେ
ସାଗରରେ ତରଙ୍ଗ ଉଠିଲା
ନିତ୍ୟ-ସ୍ପନ୍ଦନରୁ ଜାତ ମୁକ୍ତ-ମଣିଷ
ସୂର୍ଯ୍ୟ ସ୍ନାତ, ଆଲୋକ ଉନ୍ମାଦ
ସୃଷ୍ଟି ପାଇଁ, କୃଷ୍ଟି ପାଇଁ
ନୂତନ ଦୁନିଆ ପାଇଁ
ମୈତ୍ରୀଦେବ ଅନାମଙ୍କୁ
ଶୂନ୍ୟରେ ଚୁମ୍ବନ କଲା ।
ତା'ପରେ ଦୁନିଆ ସାରା
ଗୋଟିଏ ହିଁ ଦୁଆ
ଧାଧିନ୍ ଧେୟା ଅନାମ-ବାୟା
ଧାଧିନ୍ ଧେୟା ଅନାମ-ବାୟା
ଅନାମ ଅନାମ
ଅନାମବାୟା.........

ସକାଳ ଓ ସଞ୍ଜ ସବୁ ମପା ହେଲେ
ତୋ ଦେଉଳ ଦଧିନଉତିରେ
ମୁଁ ଧୋଇଲି ଝାଳସବୁ
ଫେରି ଆସି ନରେନ୍ଦ୍ର ପାଣିରେ,
ଢେଉ ସବୁ ମନେ ଓ ବାହାରେ
ଢେଉ ପୁଣି ଛେଚି ହୁଏ
ରାତିଟାରେ ଦ୍ୱିତୀୟ ପ୍ରହରରେ ।

କିଏ ସେ କହିଲା-ହେ ଭାଇନା !
କା' ଲାଗି ମାଖିଲ ଚନ୍ଦନ
କା' ଲାଗି ଗଳାରେ ମାଳ
କା' ଲାଗି ପିଇଲ ଭାଙ୍ଗ
କା' ଲାଗି ଗାଲରେ ଖିଲ ?

କହିଲ, କହିଲ :
କୁଆଡ଼େ ଚାଲିବା ହେଲ
ନାନୀ ଏବେ ଶୋଇଥିବ ଗହଳ ନିଦରେ
ଛୋଟ ପିଲା ମାଢ଼ିଟାରେ ଗୁଞ୍ଜିଦେଇ
ଦୁହାଁଳ ଥନରୁ କଳେ.......

ଶୁଣୁନୁ ଭାଇନା ! ମଲା ଯାଃ-
ଏଡ଼େ ଅରସିକ !
ମୋ ପିଣ୍ଡା ତଳକୁ ଆସି ଓଳି ତଳୁ ଖସି ଯାଅ
ମୁଁ ବସିଛି ସଞ୍ଜ ବେଳୁ ଖୋସା ବାନ୍ଧି
ରାତି ଯେ ପାହୁନି ମୋର !
ମୋ ଘରେ କି ଡ଼ର ନନା !
ଆଖି ନାହିଁ, କାନ ନାହିଁ
ବାଜି ଗଲେ ଦୋଷ ନାହିଁ
ବାପ ନାହିଁ ମା' ନାହିଁ

ମନ ଥିଲେ ମନା ନାହିଁ ।
ଘଡ଼ିଏ ବିତିଲେ କାହାର କିଏ ?
ଗଣେଷ ତିଆରି ଛଡ଼ା ହଳଦୀରୁ
ଶିବ ପାର୍ବତୀ ଯାହାର ଯିଏ ।

× × ×

ମୁଁ ଶୁଣୁଛି ପୁଣି କିଛି ଶୁଣି ପାରୁନାହିଁ
ମୁଁ ଝୁଲୁଛି ମଣି-ବିମାନ ଯେସନ
କୁମ୍ଭାଟୁଆର ଆଖି ମୋର
କେଉଁ ନାନୀ ଗୋଛିରେ ପଡ଼ିଛି.....
ମୁଁ ଖୋଜୁଛି ଷଣ୍ଢପରି ସୁଙ୍ଘି ସୁଙ୍ଘି
କାହାନ୍ତି ନାନୀଏ ସବୁ, କାହିଁଗଲେ ?

ଖାଇଗଲା ସମ୍ବଲେଶ୍ୱରୀ କି
ଅବା ଗଲେ ପାଣି ଆଣି ରାମଚଣ୍ଡୀ ମୁହାଣକୁ
ଭାର୍ଗବୀରେ ଗାଧୋଇ ଗଲେ କି ?
କେଜାଣି ?
ମୁଁ ଛିଡ଼ା ଦାଣ୍ଡ ଦରଜାରେ କଳାପାହାଡ଼ ଯେପରି ।

କେଉଁ ଶାସନରେ ସବୁ ଅଛ ହୋ-ନାନୀଏ !
ପଞ୍ଚମକାର ପୂଜା ମୋର ଅଧା ପଡ଼ିଅଛି
ତନ୍ଦରା ପଡ଼ିଛି ବୋଲି ଡାକୁଛି ନାଁ
ନ ଶୁଣିଲେ ଦାରିଆଣି ଘରେ ଗଲି
ଜାତି କିସ ମୁଁ ବୁଝୁନି-
ପଇତା ଦେଖିଲେ ସିନା ବ୍ରାହ୍ମଣ ଜାଣିବି
ଆଲୋ ! ବ୍ରାହ୍ମଣୀ ଚିହ୍ନିବି କେମନ୍ତେ ?
ମନ ମୋର ଦୋଦୋପାଞ୍ଚ
କାହାକୁ ମୁଁ ଖୋଜି ଆସି କୋଉଠି ଲାଗିଲି !
ଭାଙ୍ଗୁଛି ଲହଡ଼ି ପରି ଖୁମ୍ବସବୁ ମୁକ୍ତି ମଣ୍ଡପର
ମୋ ଗୋଦରଗୋଡ଼ ନେଇ
ମୁଁ ପାରୁନି ଆଗକୁ ଦଉଡ଼ି ।

ମୋ ଷୋଳ ଶାସନ ଗଲା
ପୋଡ଼ି ଜଳି ଶୀତଳଷଷ୍ଠୀ ବାଣରେ
ଡ଼ିହରେ ମୋ ବାଇଗଣ ଗଛ
ନଡ଼ିଆ ଗଛ ଛାଇରେ ଶୁଦ୍ର ନାଚିଲେ
'ଆହେ, ବ୍ରାହ୍ମଣେ ହୋଇବେ ଅଜ୍ଞାନୀ
ଭଜ ଅଲେଖ ବାଇ ।'

ମଣିମା ! ଶୁଣିବା ହେଉ-
ଟିପାଏ ଗଞ୍ଜେଇ ମିଳୁ
ମୋ ଗଳାକୁ ନଳୀ ମୁଁ କରିଛି ଏବେ
ଆଉ ବେଣା ଉପାଡ଼ିବା ଇଛା ମୋର ନାହିଁ ।
ଏଥର ମୁଁ ଖୋଲିଦେବି ମେଘନାଦ ପାଚେରୀକୁ
ଛାଡ଼ି ଦେବି ଦାସିଆଠୁ ଖାଇବାକୁ
ମତେ ଖାଲି କହିବା'କୁ' ମହାବାହୁ !
ବ୍ରାହ୍ମଣୀ ମୋ ଗଲେ ଭଲା କେଉଁ ରାଇଜକୁ ।

ରାଜା ! ପୁଣି ଏମିତି ହଏଟି ?
କାଚ କେନ୍ଦୁ ପାଣି ଆଉ ସୁଜିଦେରେ ବାଲି ଖୋଜି
କେତେ ନ ଯାଇଛେ !
ଆଖେଡ଼ା ପିଲା ଛାତିରେ ସାଙ୍ଗ ହେଇ
କେତେ ନୋଟ ନ ବାନ୍ଧିଛେ
ଓଳି ଓଳି ଗୁରୁନ୍ଦା ଖାଇଛେ
ଓଡ଼ିଶୀ ଚମ୍ପୁ ଗାଇଛେ
ସବୁ ଭୁଲିଗଲ ମଣି !
ପୁଣି କପଟ ଆମଠି ?

× × ×

ଚାଲିଲିଣି ହଜାରେ ବରଷ
କିରିୟା ମା'କ ! କ'ଣ ବାଟ ସରୁ ନାହିଁ !
ଅମୁହାଣି ସାଇ ଇଏ
ଏଠୁ ସବୁ ଶୂନ୍ୟ ଶୂନ୍ୟ - ମହାଶୂନ୍ୟ

କେଉଁଆଡ଼େ ଯିବି ?
ଗଡ଼ନ୍ତି ଉପର କାହିଁ, ଗାଣ୍ଠୁଆ ଚଉରା କାହିଁ
ପେଜନଳା କୋଣ କାହିଁ, ଚେମେଣି ଚଢ଼େଇ କାହିଁ
କାହିଁ କାହିଁ - କିଛି ନାହିଁ !
ହଇହେ, ବଡ଼ ପଣ୍ଡେ !
ତମର ସେ ଉଞ୍ଚ ପିଣ୍ଡା କାହିଁ ?

ସକାଳ ହେଲାଣି ପରା !
ମତେ ସବୁ ଜଳ ଜଳ ଦିଶେ
ସବୁକିଛି ଆଲୁଅ-ଆଲୁଅ ମୋ ଚାରିଦିଗେ
ବା'ବୁଆରେ ଆଲୁଅ !
ହେଲେ ମୋ ବ୍ରାହ୍ମଣୀ କାହିଁ ଆଉ ତ ମିଳୁନି !

ପହଡ଼ ତୁମର ମାଲିକ ଖୋଲିଛି କିଏ ସେ
କିଏ ଘଣ୍ଟି ବଜଉଛି-ଆରତୀ କରୁଛି ?
ମୋଅର ତ ପାଳି ଥିଲା.......
ଏଣେ ମୁଁ ଦେଖୁଛି ଖାଲି
ଆଲୁଅ-ଆଲୁଅ
କିଏ ସେ ବ୍ରାହ୍ମଣୀ ଆଉ କିଏ ହାଡ଼ିଆଣୀ
କିଏ ରାଜମାତା ଆଉ କିଏ ଦାରିଆଣୀ
କିଛି ତ ଜଣା ପଡୁନି ।
ଖାଲି ଶୂନ୍ୟର ଆଲୁଅ
ଚକା...ଚକା...ଚକାଡ଼ୋଳା
ନାଲିଆ ଭିତରେ ଧଳା
ଧଳା, ଧଳା-ଧଳା ପୁଣି କଳା
ଆଲୁଅ ଶେଷରେ କଳା
ସବୁ କଳା-ମିଚି ମିଚି ଅନ୍ଧାରର କଳା ।

× × ×

ଗହଳିଆ ଅନ୍ଧାରକୁ ମୁଁ ଚୁମିଲି ଅକସ୍ମାତ୍
ତା'ପରେ ଅନ୍ଧାର ବହୁଛି ମୋର ଶିରା ପ୍ରଶିରାରେ

ମୁଁ ଖୋଜୁଛି-କାହାକୁ ଖୋଜୁଛି କିନ୍ତୁ
ନିଜେ ମୁଁ ଜାଣେନି-
ମୁଁ ଶୁଣିଚି କଣ୍ଠସ୍ୱର କିନ୍ତୁ ତା'ର
ରୂପ ମୁଁ ଦେଖିନି-
ଅନ୍ଧାର ଭିତରେ ତା'ର ଦେହ ନାହିଁ
ଅନ୍ଧାର ତ ମୋ ଭିତରେ ନିଜେ ଶିହରୁଛି ।

ମୁଁ ହେଉଛି ଅନ୍ଧାରର ଅଣୁ
ସେ ପଣ୍ଡା ମୁଁ ତା' ଗୁମାସ୍ତା
ଯେପରି ଆଦେଶ ଦେଇଛି
ସେପରି ମୁଁ ପାଳନ କରୁଛି ।

ତାକୁହିଁ ଚାହିଁଛି-ତା ଭିତରେ ତାକୁ ଖୋଜି
ମୋ ଆଖିକୁ ଅଭ୍ୟସ୍ତ କରିଛି ।
ତା' ଲାଗି ଛେଇବି ବେକ ପଇଡ଼ କାଟିଲା ପରି
ତା' ଉପରେ କିଏ ଟିକେ ଆଖି-ପକେଇଲେ
କିଏ ମା'କ ପୁଅ ଅଛି ଖଣ୍ଡ ମଣ୍ଡଳରେ ?
ଯିଏ ମୋ ମୁଣ୍ଡ କିଣିବ !
ଖାଲି ମାଲିକ୍ ! ତୁ ଥା' ସବୁଦିନ ମୋ ଚଉବାହାକୁ ।
ତୋ ପାଖରେ ଖାଲ ନାହିଁ, ଢ଼ିପ ନାହିଁ
ପଡ଼ିବାର ଭୟ ନାହିଁ ଉଠିବାର କଷ୍ଟ ନାହିଁ
ସବୁକିଛି ସମତଳ-ସବୁକିଛି ଏକତାଳ
ମାଲିକେ ! ତୁମର ମୁଁ ସେବାକରି ନିଜକୁ ପାଇଛି ।

× × ×

ମୁଁ ଟୋଳୁଛି ତେଣୁ ମୋର ଡ଼ାହାଣ ପାଦକୁ
ପଥ ସିନା ଜାଣେ ନାହିଁ- ତୁ ପରା ଅଛୁ ମଣି !
ଆମେ ତ ଖେଳିବା ଏଠି ହା-ଡୁ-ଡୁ, ଲୁଚୁକାଳି
ମୁଁ ଲୁଚିବି ତୁ ଖୋଜିବୁ-ତୁ ଲୁଚିବୁ ମୁଁ ଖୋଜିବି
ମୋ ଅଣ୍ଟିରୁ ତୁ ଖାଇବୁ ପୋଡ଼ା ଚାଉଳର ଭଜା
ମୋ ପାଇଁ ଆଣିବୁ ସର, ଦହି ଓ ଲବଣୀ ।

ତୁ ମୋ ଗୋଷ୍ଠୀ, ଆଡ୍‌ଡା ଅଭଡ଼ା କୁଡୁଆ
ତୁ ମୋ ଆଖଡ଼ା-ଯାଗା ଘର, ଭାଙ୍ଗବଟା ଶିଳ
ତୁ ମୋ ଚିଲମ ପୁଣି ମୋ ଗଞ୍ଜେଇ
ତୁ ମୋ ନଡ଼ିଆ କତା-ତୁ ନିଆଁ-ତୁ ଧୁଆଁ
ତୁ ମୋ ଆଖିର ଲାଲି-ତୁ ନିଶା-ତୁ ଶୋଷ
ତୁ ମଣି ! ମୋ ଜୀବନ, ମୋ ଜୀବନ ଧନ

× × ×

'ଜୀବନ ଧନରେ ମୋର ମୋ କଳାମାଣିକ !
କୋଉଠି ତୁ ? ଅଗନା ଅଗନି ବନସ୍ତ
ଚାଲିଆ..... ଚାଲିଆ.....'
ମୁଁ ଶୁଣୁଛି ବହୁବାର ତୋ ଡାକ-ବୋଉ ଲୋ !
ଏଇମିତି ସବୁବେଳେ ଡ଼ାକୁ ।
ତୋ ଗର୍ଭରୁ ଜନ୍ମ ନେଇ
ମୁଁ କି କେବେ ହଜିପାରେ ଜଙ୍ଗଲ ଭିତରେ ?
ମୁଁ ଫେରିବି ଗୋଠ ନେଇ-
ମୋ ସଖା-ସୋଦର ସହ, ନହେଲେ ପଛକେ ନାହିଁ ।
ମୁଁ ପରା ଖୋଜୁଛି ଖାଲି ଗୋଟେ ଋତୁ
ସଜେଇ ଯିବ ଯେ ସବୁ ଗାଁ ଗଣ୍ଡା-ନଗର ଅଟ୍ଟାଳୀ
ମୁଁ ଖୋଜୁଛି ଟିକିଏ ପବନ
ଗାଇବ ବଂଶୀ ଯହିଁରେ
ତୋ ଆଦର-ସ୍ନେହ ଓ ସୋହାଗ
ମୁଁ ଖୋଜୁଛି ଗୋଟେ ଫୁଲ
ଦୁନିଆର ସମସ୍ତେ ବାସନା ମେଣ୍ଟାଇବା ଲାଗି ।

କିଛି ତ ମିଳୁନି ବୋଉ ଲୋ, କିଛି ତ ମିଳୁନି
ସବୁ ତୁ ଲୁଚେଇ ରଖିଛୁ ଶିକାଟାଣି ।
ଏଡ଼େ ଇଏ ! ଦେ'-ଦେ'-
ମୋ ପେଁକାଳୀ ବଜେଇ ଦେ'

ଟିକେ ତୋର ମନ ଦେ'-ମତେ ଦେ' ତାକୁ ଦେ'
ସାରା ଦୁନିଆକୁ ଗେଲ ଦେ'-ଚୁମା ଦେ'
ଗେଲ କରିବା ଶିଖେଇ ଦେ'
ଭଲ ପାଇବା ଶିଖେଇ ଦେ' ।

× × ×

ତତେ ମୁଁ ପାଇଛି ଭଲ-
ମିଛି ମିଛି ବାହାଘର ଖେଳେ ଯେବେ
ମୁଁ ହୁଅଇ ବୋହୁ ଆଉ ତୁ ହେଇଛୁ ବର ।
'ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ତୁମର ଆମର ନାଲି ପଇଁଚ ।'

ତା'ପରେ ମୁଁ ପାଦରେ ନୁପୁର ବାନ୍ଧି
ଚାଲିଅଛି ଦାଣ୍ଡେ ଦାଣ୍ଡେ-ମାହାରୀ ବେଶରେ
ଗାଇଛି ତୋ ରୂପର ବର୍ଣ୍ଣନା-
'ନୟନଂ ମଧୁରଂ-ବଚନଂ ମଧୁରଂ
ଚଲିତଂ ମଧୁରଂ'-ହସିତଂ ମଧୁରଂ'
ସବୁକିଛି ମଧୁର ମୁଁ ଦେଖିଅଛି.....
ଝରଣା ପାଣିରେ ମୋର ପ୍ରତିବିମ୍ବ ଦେଖି
ତୁ ଯା'ରେ ଚାହିଁଛୁ-ମୁଁ ସେଇ ଭାବି
ଲାଜରେ ସରି ଯାଇଅଛି ।

ତା'ପରେ ମୁଁ ଶୂନ୍ୟକୁ ଚୁମ୍ବନ କରିଛି
ଏବଂ କଦମ୍ବ ଗଛକୁ ବାହୁ ବନ୍ଧନେ ବାନ୍ଧି
ଆଲିଙ୍ଗନର ଆସ୍ୱାଦ ପାଇଛି,
ମୁଁ ତୋ ପ୍ରେୟସୀ ରାଧା
ଅସୁମାରୀ ବାଧାର ଭିତରେ
ମତେ ତୁ ଡାକ୍ ବା ନ ଡାକ୍
ମୁଁ ଆସୁଛି ତୋ ଜୀବନ ପୂର୍ଣ୍ଣାହୁତି ବେଳେ ।

× × ×

ପୂର୍ଣ୍ଣାହୁତି-ପୂର୍ଣ୍ଣାହୁତି
ତା'ପରେ ତୁ ଦାରୁଭୂତ ମୁରାରି
ତୋର ହାତ ନାହିଁ, ଗୋଡ଼ ନାହିଁ
ଉଠା ପଡ଼ା କିଛି ନାହିଁ
ଚୁମି ଚୁମି ତୋ ଦେହରେ ଏତେ ଦାଗ ଭରିଦେଲି
ଶେଷରେ ତୁ କାଳିଆ ହେଇଛୁ
ମୁଁ ବି ହାରିଛି ରଙ୍ଗ-
ରଙ୍ଗ ଆଉ କୋଉଠି ବି କିଛି ନାହିଁ
ସବୁଆଡ଼େ କାଳିମା ଜମିଛି
ସେ କାଳିମା ବୋହି ଏ ଅନ୍ଧାର
ମୋ ଗର୍ଭରେ ସଂଜାତ ହେଉଛି ।
ସେ'ତ ମୋର ନୁହେଁ - ସେ'ତ ତୋର ନୁହେଁ
ମହାକାଳର ସେ ଏକ ନୈର୍ବ୍ୟକ୍ତିକ ଶିଶୁ
ଯେ ଫାଡ଼ିବ ଅନ୍ତନାଡ଼ି ଅନ୍ଧାରର
ଆଣିବ ଆଲୋକ ଆମକୁ ଦେଖାଇବା ଲାଗି-
ଯେ ତୋ ଭୃତ୍ୟ ହେବନି, ସଖା ବି ହେବନି
ତୋ ସନ୍ତାନ ନୁହେଁ ସେ-ପ୍ରିୟା ବି ହେବନି
ସେ କେବଳ ପ୍ରଳୟ-ସେ କଲ୍କୀ
ଛେଦିବ ସମସ୍ତ ଛଳନାର ମିଥ୍ୟା ସମ୍ପର୍କ
ସଭିଏଁ ଏକାକାର ହେବା
ଏବଂ ତା'ପରେ.....

× × ×

ନିଶା ଯେଣୁ ଆଉ କିଛି କାଟୁ କରୁନାହିଁ
ମୁଁ ପାଳିଛି ସାପଟାଏ-
ତା' ଦଂଶନେ ଅଳ୍ପଟିକେ ନିଶାକ୍ତ ହେବାକୁ
ତା'ପରେ ଗଡୁଛି ନିଶାରେ ଶରଧା ବାଲିରେ ।
ସାଇ ଭାଇ ହସିଛନ୍ତି-ହସୁଛନ୍ତି ସମସ୍ତ ସୁଜନ
ପାକୁଳି ପାକୁଳି ଯେତେ ଯୁକ୍ତି ଆଉ ନାହିଁ ।

ଏକ ଅସମ୍ଭବ ମୁହୂର୍ତ୍ତ
ମୁଁ ବୁଝୁଛି ପୁଣି କିଛି ବୁଝି ପାରୁନାହିଁ ।

ବିଶ୍ୱାସ ମୋ କେଉଁପାଦ ମସ୍ତିଷ୍କର
ଯହିଁରେ ମିଳିଲା ହରି ?
ମୁଁ କି ସେହି ନିରୀହ ବ୍ରାହ୍ମଣ ସନ୍ତାନ
ଜାଣି ନାହିଁ ଭୋଗମନ୍ତ୍ର, ଯଜ୍ଞ ବା ଜଣାଣ
"ନନା ତ ଯାଇଛି ଦୂର ଗାଁ କ୍ଷେତ କଥା ବୁଝି
ମୁଁ ବାଢୁଛି ଖିରୀ ହାଣ୍ଡି ତୋ ଭୋଜନ ଲାଗି
ତୁ ଖାଇବୁ ଖିରୀ ଦିଅଁ, ତତେ ମୋର ରାଣ"
ଏତିକି କହି ମୁଁ ଯିବି ଖେଳିବାକୁ ଗାଁ ପଡ଼ିଆରେ ?
ତା'ପରେ ତ ତୁମ ହାତେ ଅସମ୍ଭବ ଜ୍ୱଳା
ହାତ ତୁମ ସିଝିଗଲା ଗରମ ଖିରୀରେ !
ମତେ ତ ଫିଙ୍ଗିନ ତୁମେ-
ତୁମ ହାତ ସିଝିଗଲା ବୋଲି !
ମୁଁ ତେଣୁ ଡେଇଁଲି ଦାଣ୍ଡକୁ ଏବଂ ଦାଣ୍ଡରେ
ଶିମ୍ବ ମଞ୍ଜି ଚିପି ଚିପି ସ୍ୱର୍ଗଯାଏଁ ଡେଇଁଗଲି
ବାନର ସେନାରେ ଖାଲି ଟିପି ଟିପି କଥା
'ଜଗନ୍ନାଥେ ! କାହାକୁ ଚାଖଣ୍ଡେ କାହାକୁ ହାତେ !'

ଯିଏ ଯାହା କହିବାର କହିଯାଅ-
ଯଦି ପାର ତୁମେ ମୋତେ ମାରିଦେଇ ପାର
ମୁଁ କିନ୍ତୁ ବସିଛି ମୋର ବିଶ୍ୱାସର ତ୍ରିନାଥ ମେଳାରେ
ନାଦମୁଣ୍ଡେ ଦେଉଅଛି ଶ୍ରୀ ଚୁମ୍ବନ ପ୍ରତି ମୁହୁର୍ତ୍ତରେ
ତେଣୁ ତ ଡାକୁଛ ମତେ 'ଜୀବଧନ'-ଅତି ସେନେହରେ !

ମେଳା ଶେଷେ କେହି ଆଉ-
ଅଳ୍ପ ବହୁତ କହିବାନି-ପ୍ରସାଦ ବାଣ୍ଟିଣ ଖାଇବା
ତା'ପରେ ବକ୍ତବ୍ୟ ତୁମର ନାହିଁ-ମୋର ବି ନାହିଁ
ଯାହା କିଛି ମୋର ଅଛି ସେ ସବୁ ତୁମର
ଏବଂ ସବୁ କିଛି-ଆମ ସଭିଙ୍କର ।



ଜଗତି ଉପରେ ହନୁ
ଦେଖୁଛି ସାରା ଟାଉନୁ ।
ଅନ୍ୟାୟ ଓ ବ୍ୟଭିଚାର
ଦୁର୍ନୀତି ଓ ଅତ୍ୟାଚାର
ସବୁ ଏକାକାର
କମ୍ପୁଛି ଭୁବନେଶ୍ୱର
ହରିଲୁଟ୍ କର ବନ୍ଧୁ
ମଣି ଲୁଟ୍ କର ।
ଏଥିରେ ବା' କି ଠିକଣା
ମିଳିବ କାହାର
କାହିଁ ଅବା ଡ଼ାକ ଘର
କିଏ ସେ ଡ଼ାକ ପିଅନ
କୋଉ ସାହି ମୋର ?
ମତେ ଏଠି କିଛି ମିଳୁ ନାହିଁ
ପର ଘର ଭୁଆସୁଣି
କେଡ଼େ ତୋ ବହପ
କାନ୍ଥ ବାଡ଼ୁ ଠିକଣା ଖୋଜୁଛୁ
ଘର, ବରକୁ ନଚାହିଁ ?

କିଏ ମୁହିଁ
କାହିଁ ମୋ ଠିକଣା
ପଚାରୁଛି ନିଜକୁ ମୁଁ
ମୋ ଠିକଣା ମୋତେ ମିଳୁନାହିଁ
ଅଠାକାଠି ପଞ୍ଜୁରୀରେ
ବନ୍ଧା ଗୋଡ଼ ମୋର
ବୟସର ଦିନ ସରୁନାହିଁ ।

ସରିଗଲା ଚକ୍ ଖଡ଼ି
କାନ୍ଥବାଡ଼ ଗଲା ଭରି
ବହୁତ ଲେଖିଲେ ଲୋକେ
ମିଶାଣ ଫେଡ଼ାଣ କରି
ପର ଗଲା ଚିପି ଚିପି
ନିଜ ପାଇଁ ଅର୍ଜିଗଲେ ଯିଏ ଯେତେ ମାନ
କିଏ କେତେ ବାନ୍ଧିନେଲା
ଗଣ୍ଠିରେ ତା' ଅଣ୍ଟା ଗୁଞ୍ଜା ଧନ ?
ମହେନ୍ଦ୍ର ତନୟା କୂଳେ
ବାଲିରେ ମିଶିଲା କିଏ
ଅବା ଯିଏ ପଚାରନ୍ତି ସ୍ୱର୍ଗଦ୍ୱାରେ
ଆଉ କେତେ ଦିନ ?
ସେମାନଙ୍କ କପଟ ପଶାରେ ଦିନେ
ଜଣେ ପ୍ରଶ୍ନ କଲା
ଆମ ପାପ ଏ ସହରେ
ଅତ୍ୟନ୍ତ ପ୍ରବଳ ହେଲା
କି କରିବା ଭାବ ଏବେ
ସବୁ ନାରୀ ହେଲେ ଗର୍ଭବତୀ !
ଆର ବୁଢ଼ା ବୁଦ୍ଧି ଦେଲା
ଏତେ ଚିନ୍ତା କିଆଁ ସାଥୀ
ସମସ୍ତ ଦୁର୍ନୀତି ପାଇଁ
କହୁଥିବା କୁମାର ମହାନ୍ତି !
ଭାଙ୍ଗିପଡୁ କୋଇଲି ବୈକୁଣ୍ଠ ଆରେ
ନିଶା ତଳେ ପବନ ନବହୁ
ସାପ ପଶୁ ତୁଳସୀ ବଣରେ
ଆନନ୍ଦ ବଜାରେ ମୁଠେ ଅଭଡ଼ା ନରହୁ ।
ଚୋର ତ ସୁଜନ ହେଲେ
ମୁଁ କିଆଁ ପତିତ ହେଲି
ଚାଣ୍ଡାଳ ଦୁଆରେ ?

ସିଂହଦ୍ୱାରେ ଏତିକି ପଚାରେ !
ନୋହିଲେ ରେ କଳାମୁଖ
କଳଙ୍କକୁ କିବା' ଡ଼ର
ମୁଁ ତ ଛାଇ ଧୂଳିକଣା
ଶରଧା ବାଲିରେ !
ତା'ପରେ ଲୋ ରାମାବର !
ତୁ ଆଉ ମୁଁ
ଲହଡ଼ି ଭାଙ୍ଗୁଚି ପାଣି
ଶବ୍ଦ ଘୁଉ ଘୁଉ ।
ମୋ ହାତେ ଖଞ୍ଜଣୀ
ତୋର ଓଠରେ ଜଣାଣ
ଭଲ କଲୁ
କୁମାରକୁ କଲୁ ବଇଷମ
କଳ୍ପବଟ ଡାଳ ମୋର
ମଚ ମଚେଇଲା
କି କଲୁରେ କଳାପୁରୁଷ
ମୋ ଜଙ୍ଘ ବଥେଇଲା ।।



ସଙ୍କରା ସଙ୍କରା ସଙ୍କରା ସଙ୍କରା
ସବୁ ସଙ୍କରା
ତୁ ସଙ୍କରାକୁ ମୁଁ ସଙ୍କରା
ସଙ୍କରା ପଚାରେ ସଙ୍କରା ଉତ୍ତରେ
ବାକି ଦୁନିଆଟା ବୋକା ସଙ୍କରା !
କୁମର ସଲାମ୍ କର
ମାଡ଼ି ଆସୁଛି ପଟୁଆର
ଶଙ୍ଖ ହୁଳହୁଳି ରୋଳ
ମଣିଷ ପାଗଳ ସବୁ
ରଥ ପଥ ଟଳ ମଳ
କୁମର ସଲାମ୍ କର
କୁମର ସଲାମ୍ କର ।।

ବର୍ଣ୍ଣ ସଙ୍କରରେ ଭରା ଗ୍ରାମ ଓ ନଗର
ସମସ୍ତ ସଙ୍କରା ଏବେ ହେଲେ ଏକାକାର
ସଙ୍କରା ସଙ୍କରା ସଙ୍କରା ସଙ୍କରା
ସବୁ ସଙ୍କରା
ଭାତ ସଙ୍କରାକୁ ଗିନା ସଙ୍କରା
ଭାତ ମାଗୁଥିବା ଭୋକି ସଙ୍କରା
ଭିକ ବାଣ୍ଟୁଥିବା ଦାନୀ ସଙ୍କରା
ସଙ୍କରା ମାଗଇ ସଙ୍କରା ଘେନଇ
ବାକି ବଳିଗଲେ କାବା ସଙ୍କରା !

କୁମର ସଲାମ୍ କର
ଖବର କାଗଜ ଭରପୁର
ଉପଦେଶ ଯେତେ ସଙ୍କରାଙ୍କର
ଦନେଇ ଯାଆନା ମଇଁଷି ପାଶ
ଅରଣା ଭୂଷା ମାରିବ

ଗଛର ଡ଼ାଳ ଛୁଇଁ ଦେଏନା
ବୃକ୍ଷପରୀ ଝୁରିବ
ରଜାପୁଅ କହିଯାଇଛି ମିରିଗ ମାରି ଆସିବ
ରାଣୀ ଗୁମ୍ଫାକୁ ଖୋଲୁଥା
ମନର ଗୁମ୍ଫା ମୁଦୁଥା
ମୁଦା ପାଣିତ ଅଣସର
କୁମର ସଲାମ୍ କର ।

ଜନପଥେ କୋଳାହଳ
ଶବଯାତ୍ରା ମଣିଷର
ମୁହଁ ସବୁ ବନ୍ଦକର
ଜିନ୍ଦାବାଦ୍ ଜିନ୍ଦାବାଦ୍
ତଣ୍ଟିଚିପି ଧର୍ମକର
ଜନ୍ଦାବାଦ୍ ଜିନ୍ଦାବାଦ୍
ମୁଖାପିନ୍ଧି ସଖାକର
ଜିନ୍ଦାବାଦ୍ ଜିନ୍ଦାବାଦ୍
ଏଇତ ଦୁନିଆ ତୋର
ଦୁନିଆଁ ଗୋଲାମ୍‌ଙ୍କର
କୁମର ସଲାମ୍ କର ।

ଆଉ କେତେବେଳ ବସିଥିବା ଅପେକ୍ଷାରେ
କଟେ ନାହିଁ କାଳ
ମନଗହିରରୁ ଟିକେ ସଙ୍କରାକୁ କାଢ଼ିଦେ
ରକ୍ତ ବା' କାହାର ଅଛି ରକ୍ତପାତ କରିବାକୁ
ଦୁନିଆଁକୁ ଗେଲ ଦେ ଶ୍ରଦ୍ଧା ଦେ
କିଏ ସେ ଆଡ଼େଇ ଦେବ ବଳିଆର ଭୁଜକୁ
କାହାର ବା ବଳ ଅଛି ଫିଙ୍ଗିଦେବ ମିତକୁ
ତୁ ମିତକୁ ମୁଁ ମିତ
ମିଳିମିଶି ଆମେ ଗାଇବା ଗୀତ
ସଙ୍କରା ଆସିଲେ ମାର୍ ନାତ
ହୁସିଆର୍ !
ମାଡ଼ି ଆସୁଛି ପଟୁଆର
କୁମର ସଲାମ୍ କର
କୁମର ସଲାମ୍ କର ।।



ଛଉ ଛଉକା -
ତୋ-ମୋ ଭିତରେ ବୋହୁ ବୋହୁକା
ଭୂଆଁ ବୁଲୁଥା !
ଖସିଯାଉ ଆସି ମୋର
ହାତ ପାଆନ୍ତାରେ
ତା'ପରେ ମୁଁ ଧାଉଁଥାଏ
ତୋ ଛାଇ ପଛରେ
ତୋ ଛାଇର କଳା ମତେ କୃଷ୍ଣ କରିଦେଲା
କୃଷ୍ଣ ମୋର ମନ ପ୍ରାଣ ଉଷ୍ମ କରିଦେଲା
ଉଷ୍ମତା ଯେ' ଚରିଯାଏ କିଆରୀ କିଆରୀ
ଗୋଚର କାନ୍ଦଇ ବସି ହାଏ ମୋ ପିଆରୀ !

ପ୍ରେମ-ମୋ ଆକ୍ଷିର ପୁଅ
ତାଡ଼ି ଫିଙ୍ଗିଦେଲା
ଅନ୍ଧକାର-ତା'ପରେ ତ
କଳା ଛାଇଗଲା ।

ତୋ ଭିତରେ ମୁଁ - ଆଉ ମୋ ଭିତରେ ତୁ
କୋଉଠି ମିଶିବା କହ ?
ଆମ୍ବତୋଟା ନଈକୂଳେ
ବେତବଣ ସଞ୍ଜବେଳେ
କୋଉଠି ଓ କେତେବେଳେ ?

ବୋହୁ ବୋହୁକା ଶେଷ ହେବ
ଫୁଲ ଚାଙ୍ଗୁଡ଼ି ଭରିଯିବ
ମନରେ ମନ ହଜିଯିବ
କିଏ କାହାକୁ ଖୋଜିଯିବ ?

ପ୍ରଳୟ ପୟୋଧୀ ଜଳ
ତୋ - ମୋର ସମତଳ
ବାକି ଯାହା - କୁଆଁର ପୁନିଅ ରାତି
ଦି' ଘଡ଼ରି ପୁଚିଖେଳ
ଅନ୍ଧାର ଓ ଆଲୁଅର......

ଛଉ ଛଉକା -
ତୋ-ମୋ ଭିତରେ ବୋହ୍ଲୁ ବୋହ୍ଲୁକା ।।



ଆସି ଯିବାଟା ଏକା ଏକା
ଚାଲି ଯିବାଟା ଏକା ଏକା
କହିବାକୁ ତ ବାକି ଜୀବନ
ଦୋକା, ତିକା, ଚଉକା ଛକା
ସବୁ ଧୋକା-
ଗହଳି ଭିତରେ ଏତେଟା ଏକା !
ଏକା ଏକା ଖାଲି ଏକା ।

ଏକା ଏକା ବୋହୁ ବୋହୁକା
ଆପଣା ଭିତରେ ଛକା ପକା
ମନ ପାଇଗଲେ ପଡ଼ଇ ପାଲି
ପାଲିର ଛକିରେ ଗୋଟି ଏକା
କଚେ ପୁଅ ବା'ର ପରେ
ଆଉ କାହାର କୋଉଠି ଦେଖା ?

ଅମୁହାଣି ଯେତେ ଛକ ଏଠି
ପୀରତି ନଥାଉ ଖାଟୁ ବେଠି
ବୋକ୍‌ଟା ବୋଝେଇ ଫାଟୁ ପିଠି
ପାଟି ଖୋଲିଲେ ସବୁ ଛୁଟି
ଛୁଟିକି ଡ଼ର - ପାଟିକି ଡ଼ର
ମନ ନ ମାନୁ ମୁଣ୍ଡିଆ ମାର ।
ସାଆନ୍ତ ସାଆନ୍ତ ଡ଼ାକ ଛାଡ଼ିବି
ଲୁହ ଲହୁ ପିଇ ଘର ସାଜିବି
ପୁଅମାନେ ରଜା ଘରଣୀ ବିବି
ଏକା ଏକା ନିଜେ ଗୁଲାମ୍ ହେବି
ପୁଅ ନାତିଙ୍କୁ ମୋ ସଲାମ୍ ଶିଖେଇ
ନିଜେ ବଜାରରେ ନିଲାମ୍ ହେବି ।

ସରୁନି ଖେଳ - ପୁରୁନି କାଳ
ଜୀବନ ତ ନୁହେଁ ଜୀବନ୍ତ ମରଣ
କି କଲବଲ ?

କଲବଲ ସବୁ ଏକା ଏକା
ନିଦ ନାହିଁ ରାତି ସପନେ ଶଙ୍କା
ନିଦ ଶୋଇବାକୁ ଘର ନାହିଁ
ଘର ଥିଲେ ଏଠି ଡର ନାହିଁ
ଡର ଥିଲେ ଥାଉ ମନ କାହିଁ
ମନ ଯଦି ଅଛି ମାନ ନାହିଁ
ମାନ ଥିଲେ ତହିଁ ପ୍ରାଣ କାହିଁ
ପ୍ରାଣ ଥିଲେ ଆଉ
ଦୁଃଖ କାହିଁରେ ଦୁଃଖ କାହିଁ ?

ପ୍ରାଣ ନାହିଁ ଏଠି ପ୍ରେମ ନାହିଁ
ଜୀବନଟା ଖାଲି ହାଇଁ ପାଇଁ
ଅରଜିବୁ କେତେ ନିଜ ପାଇଁ
ନିଜର ବୋଲିତ କିଛି ନାହିଁ
ସବୁ ଧୋକା
କେତେ କାହାକୁ ମାରିବୁ ଧକ୍କା
ତୁ ତ ଏକା ମୁଁ ବି ଏକା
ଚାଲିଯିବା ପୁଣି ଏକା ଏକା
ଏକା ଏକା ଖାଲି ଏକା ।



ଗୁଣ ନାହିଁ - ଖୁଣ ଖାଲି
ନ କହିବା କଥା ଖାଲି
ଜୀବନକୁ ଦୋଷୀ କଲି
ନିଜେ ଲୁଚି ଚାଲିଗଲି
ପାଦ ଚିହ୍ନ କାହିଁ ନାହିଁ
ସାତ ସାହି ବୟାଳିଶି
କନ୍ଦି କନ୍ଦି ଖୋଜିଗଲି ।

ଜୀବନ - ପାଣିର ସୁଅ
ଝରଣାରୁ କୋଳ ସମୁଦ୍ରର
କେଉଁ ପାଣି କେତେ ଦୂର
ଆରେ ବାନର ବର !
ସୁଅଯେ ନଈର
ମଝିରେ କିଏ ସେ ଶୁଖେ
କିଏ ହୁଏ ସାଗରର ?

କିଛି ଜଣା ନାହିଁ - ଉତ୍ତର ବି ନାହିଁ
ବଢ଼େଇ ଖାଲି ସୁଅର
ହାଏ ମୋ ବନ୍ଧୁ - ସୋଦର
କେତେ ଆଣ୍ଠୁ ତୋର ?

ମନକୁ ଗଇଁଠି କାନିରେ
ବାଣ୍ଟିକି ହୁଏ ସର ପୁଳି
କ୍ଷୀରି ବା ସରୁ ଚକୁଳି !
ସବୁ ଲୁଚୁକାଳି ମଣି !
ସବୁ ଲୁଚୁକାଳି ।

ମଣିକୁ ତୁ ଖୋଜୁଥା
ମଣି ଅଛି ଫଣୀରେ
ଫଣୀକୁ ବି ଡରୁଥା !
ଡର ଲାଜ ଛାଡ଼ି ଦେ
ମତେ ଥରେ ଚୁମି ଦେ
କିମ୍ବା ଏତେ ଗରଗର
କେତେ ତୁ ମାରିବୁ ଚୋଟ
ମୁଁ ପାତିଲି ଛାତି ମୋର ।

ସବୁ ଚୋଟ ମରିଯାଏ
ସବୁ ପାଣି ବହିଯାଏ
ସବୁ ଦୁଃଖ ସରିଯାଏ
ତା'ପରେ ତ ଖାଲି ଖାଲି
ଶୂନ୍ୟତା ବି ଖାଲି ଖାଲି
ତା'ପରେ ତ ଚୋରା ବାଲି
ସବୁ ପୁଣି ହଜିଯାଏ ।

କିଛି ଚିନ୍ତା ନାହିଁ ମଣି
ତୁ ତ ମୋର ମଥାମଣି
ମୋ ଭୁଜ ଯେ ବଳିଆ
ମୋ କୋଳକୁ ଚାଲିଆ
ମତେ ତୁ ନିଉନ କରି
ନିଜେ ହଅ ବଡ଼ିଆ
କି ବା ଡ଼ର ?
ମୁଁ କୁମର - କଳଙ୍କରେ କାଳିଆ ।



ଯିଏ ତ ରସିଲା ମୋତେ
ମୁଁ ଆସି କହିଲି ତୋତେ
ମୁଣ୍ଡ ଟୁଙ୍ଗାରି ତୁ ହଁ ଭରିଲୁ
କାହାର କି ଗଲା ଗାଁ' ବାଲାଙ୍କର
କଥା ହେଲା ବାଟେ ଘାଟେ ?

କାହାକୁ କହିବି କଥା ମୋହର
ମୋ ବାପ ମୁହଁରେ କୋଲପ ବଡ଼
ବାପ ଥାଇ ମୋର ନଥିଲା ପରିକା
ନୋହିଲେ ସଭାରେ ଆଉ କା' ତୋଡ଼ ?
ମେଘ ବରଷିଲା ମରୁଡ଼ି ଗାଆଁରେ
ବଉଳିଲେ ମାଛଯାକ
ମୁଁ ତ ବାଉଳି ଜାଲ ଭୁଲିଗଲି
ମନ ମୋ ବନସୀ ଥୋପେ
ପୀରତି ସୂତାକୁ ପେଇଗଲି ବୋଲି
କାହିଁକି ବା ଏତେ କୋପ
ପୋଖରୀ ଭିତରେ ପାଣି ତ ଚଳୁଏ
ଦୁନିଆଟା ସାରା ଭୋକ ।
ମରଦ ପିଲା ମୁଁ ବଡ଼ଦାଣ୍ଡର
ଶରଧାବାଲିର କଲ୍ୟାଣମଲ୍ଲ
ଅଶାନ୍ତ ଯକ୍ଷିଣୀ ସୁନ୍ଦା ସିନ୍ଦୁର
ଆଉ କାହାର ବା କେତେ ଚାଦର !

ମନୁଆ ଗାଈକୁ ଚରେଇ ନେଲି ମୁଁ
ମନକୁ ରଖିଲି ଘରେ
ମନ ହଜିଗଲା କିସ ମୁଁ କରେରେ
ମନକୁ ପୀରତି କରେ ।

ତୋ ବୀର୍ଯ୍ୟରୁ ଯଦି ଜନମ ମୁହିଁ
ତୋ ସମ ମୁହିଁ କି ହୋଇବି ନାହିଁ
ଚେଲା ମୁଁ ତୋହର ତୁ ମୋ' ପୀର
ପୀର କିନ୍ତୁ ନିଜେ ଉଡ଼ନ୍ତି ନାହିଁ ।

କେତେ ପୁଅଙ୍କୁ ତୁ ମୁକୁଟ ଦେଲୁ
ମୋହରି ବେଳକୁ ଅନାଥ କଲୁ
ମୋତେ ବନ୍ଧାଇଣ ରାଜ ଦୁଆରେ
କି କିର୍ତ୍ତୀ ଅର୍ଜିଲୁ ତୋତେ ପଚାରେ
ମୋ ଗୁହାରୀ ସିନା ଶୁଣୁଛୁ ତୁହି
ତୋ ଗୁହାରୀ କିଏ ଶୁଣିବ କହରେ
ତୋତେ ପଚାରେ !



ନିର୍ଦ୍ଧନ ତୋ ଘରୁ ଭଲା
କିବା ଧନ ବୋହିନେଲି ?
ଚନ୍ଦ୍ରସେଣା ବାତୁଳ ହୋଇଛି
ସବୁ ଘର କାଚଘର
ମଳୟ ତ ବହିଥିଲା-
କାନ୍ଥ-ବାଡ଼ ଉଜୁଡ଼ି ପଡ଼ିଛି ?

ତୋଳି ଥିଲ ଘର ପରା କେତେ ଯତନରେ
ଚାରିକୋଣେ ଖଞ୍ଜିଦେଇ ଚାରିଗୋଟି ଓରା
ଘର ଯେ ପଡ଼ିଲା ଶୋଇ
ମଝିଓରା-ମଳୟ ପବନ ସୁଦ୍ଧା
ସହି ନପାରିଲା ?
ବୟସ ତ ବହିଗଲା
ପାଣି ଖାଲି ଚବର ଚବର
କାହାକୁ ବା ଅପେକ୍ଷା କାହାର ?

ତା' ପରେ ତ ଅଭିଯୋଗ, ତିରସ୍କାର
"ନ ଜାଣୁ ତୁ କେଉଁ ନୀତିରେ କାଳିଆ
ନ ଜାଣୁ ତୁ କେଉଁ ନୀତି
ସମସ୍ତ ଅନୀତି ମୋ' ପାଇଁ ଭିଆଇ
ଅର୍ଜିଲୁ କେଉଁ କୀରତି ?
ଘର ଗଲା ମୋର - ବର ଗଲା
ବଅସ, କୁଟୁମ୍ବ, ମାନ ଗଲା
କୁଳ ହାରି ଦାଣ୍ଡେ ବୁଲେ ମୁହିଁ
ଏହିକିରେ ତୋତେ ସୁହାଇଲା ?"

ଇଏ କି କାନ୍ଦଣା ତୋର
ମୋର ଅପବାଦ ପରା
ତୋ ମଥା ସିନ୍ଦୁର ?
ସୁନା ପଞ୍ଜୁରୀରୁ ଶୁଆକୁ ଭଣ୍ଡେଇ
କେହି କି ନେଲାଣି ଘରେ
ମନୁଆ ଷଣ୍ଢର କଳଣା କି ଅଛି
ନିତି କ୍ଷେତ ଚରିବୁଲେ,
ସାରୀ ଲୋ ! ଏହି ସମ ଆମ ପ୍ରୀତି
ଦଉଡ଼ି ବାନ୍ଧିଲେ ଖୁଣ୍ଟ ଉପୁଡ଼ଇ
ଛଞ୍ଚାଣର କିବା ଭୀତି ?



ମନ ସବୁ ଖୁନ୍ଦାଖୁନ୍ଦି
ପୁରୁଖା ପାହାଡ଼ ଚଟ୍ଟାଣ
ଆପଣାର ଲୋକେ ଯଦି ପରମ ବଇରୀ
ଭାତ ହାଣ୍ଡି ଝିଙ୍କୁଥିବା ଲୋକ ପାଇଁ
କି' ଅର୍ଥ ବା'
ଜଗନ୍ନାଥ ରାଣ !
ଆଜି ମଲେ - କାଲିକି ଦି'ଦିନ
କେଉଁ ପାଇଁ ଏତେ ଟାଣ
ଆରେ ବାଇମନ !
ଉଜୁଡ଼ିବ ସବୁ ଘର
ଇଟାର ବା ପଥରର
କେତେ ବା ଜୀବନ ?

ସବୁ ତାଳ - ଗହଳିରେ ଏକତାଳ
ମସ୍ତିଷ୍କ ଉପରେ ହୃଦୟ
ହୃଦୟ ଭିତରେ ମୋର
ସହସ୍ର ଯୋଡ଼ା ହାତ ହଲ ହଲ ।
ମଥାହୀନ ମଣିଷର ଚଉଡ଼ା କାନ୍ଧରେ
ମଥାଏ ପଡ଼ିଛି ଗଡ଼ି
ହୃଦୟର ହାତ ଖୋଜେ ମଣିଷ ହାତକୁ
ଦ୍ୱନ୍ଦରେ ହିଁ କଟିଯାଏ ଜୀବନର
ପ୍ରତି ଏକ ଘଡ଼ି ।
ଅମୃତକୁ ବାଣ୍ଟି ଦେ'-ବିଷ ପଛେ ନେ'
କିଛି ଚିନ୍ତା ନାହିଁ
ନାମର କି' ଦରକାର - ଦି'ଦିନିଆ ଜୀବନର
ମୁଁ ତ ଚାହୁଁ ନାହିଁ !!



ହୃଦୟ ଖୋଜିବାଠାରୁ
କେତେ କଷ୍ଟ ସତେ ଏଠି
ହୃଦୟ ବାଣ୍ଟିବା !
ପିମ୍ପୁଡ଼ି ଯିବାର ଲାଗି ବାଟ ନାହିଁ
କହରେ ଅନାମ !
ହାତୀ ଖେଦା ସେଇପଥେ
ଆମେ କି ଦେଖିବା ?

ପାଣି ନାହିଁ - ଫୁଟେ କଇଁ
ପାଣି ନାହିଁ - ଲହରୀ ମାରୁଛି ନାତ
ଭାଙ୍ଗିଯାଏ ସହସ୍ର ବୋଇତ
ପାଣି ନାହିଁ - ରହେ ମାଛ ଆହାର ନଖାଇ
ପାଣି ନାହିଁ - ବଟ ପତ୍ରେ ଭାସେ ମୁହିଁ ।

ତୋ ଜୀବନ-
ବୁନ୍ଦାଏ ଜଳରେ ଝିଲିମିଲି ମୀନ
ତଳେ ପଙ୍କ ତିନି ତାଳ
ବକ କୂଳେ-ଅପେକ୍ଷାରେ ଧ୍ୟାନ ମଗ୍ନ ।

ଶୂନ୍ୟରେ ତୋଳା ଦେଉଳ - ଦ୍ୱାର ନାହିଁ
ବିନ୍ଧାଣୀର ନାମ ନାହିଁ
ଅମୁହାଁ ଦେଉଳେ କିନ୍ତୁ ପ୍ରତିଦିନ
ସାହାଣ - ମେଳା ଓ ଦିଅଁ ଦର୍ଶନ ।

ହୃଦୟ ସାଇତା ସେଠି - ଗନ୍ତାଘରେ
ଗନ୍ତାଘରେ ପିତ୍ତଳ ଦୁଆର
ଦୁଆରେ କୋଳପ ବନ୍ଦ

କଅଁ ଯାଇଛି ହଜି,
ବାଇମନ ବାହାରିଛି ପାରିଧିରେ
ଜଙ୍ଗଲ କି ହୃଦୟ ଖୋଜିବା ?

ହୃଦୟ ଖୋଜିବାଠାରୁ
କେତେ କଷ୍ଟ ସତେ ଏଠି
ହୃଦୟ ବାଣ୍ଟିବା ?

——

# ଅନାମଙ୍କ ମଧ୍ୟରେ : ତଥାପି ନାମଟିଏ

## ଚିତ୍ତରଞ୍ଜନ ଦାସ

କବି କୁମାର ମହାନ୍ତି ମୋଟେ ଗୁଡ଼ିଏ ଲେଖିନାହାନ୍ତି। ସମ୍ଭବତଃ ଏକଥା ମଧ୍ୟ ଠିକ୍ ଯେ ସିଏ ଗଦ୍ୟ ତୁଳନାରେ ଢେର ବେଶି ପଦ୍ୟ ବା କବିତା ମଧ୍ୟ ଲେଖିନାହାନ୍ତି। ଏତେ ତ ପଦ୍ୟ ଲେଖିଲିଣି, ଏବେ କିଛି ଦିନ କିଛି ଗଦ୍ୟ ବି ଲେଖେ; ଅଥବା ଏତେ ତ ଗଦ୍ୟ ଲେଖିଲିଣି, ଏବେ କିଛି ଦିନ ପାଇଁ କିଛି ପଦ୍ୟ ମଧ୍ୟ ଲେଖିଲେ ହୁଅନ୍ତା ବୋଲି ସିଏ ମୋଟେ କେବେହେଲେ ସେହି ହିଡ଼ ଡେଇଁ ଏ କିଆରୀକୁ ଆସି ନଥିବେ ଅଥବା ଏ ହିଡ଼ଟିକୁ ଡେଇଁ ସେ କିଆରୀକୁ ଯାଇ ନଥିବେ। ସେହି ପ୍ରୟାସ ଆମର ଏହି ଚଳନ୍ତି ଯୁଗଟିରେ ମୋଟେ କମ୍ ଦୃଷ୍ଟିଗୋଚର ହୁଏନାହିଁ। ଖାଲି ଯେ ଆପଣାର ରୁଚିରେ ଗୋଟାଏ ପରିବର୍ତ୍ତନ ଇଚ୍ଛାକଲେ ସଂପୃକ୍ତ ଗଦ୍ୟ ବା ପଦ୍ୟ ଲେଖକମାନେ ଏଭଳି କରୁଛନ୍ତି ତା'ନୁହେଁ, ପାଠକମାନଙ୍କୁ ଚମତ୍କୃତ କରିଦେବା ନିମନ୍ତେ ମଧ୍ୟ କତିପୟ ଲେଖକ ତାହା କରୁଛନ୍ତି। ସ୍ୱ-ଅବଚେତନର ପ୍ରାୟ ଏକ ଫୁସୁଲାରେ ପଡ଼ି ସେଭଳି କରୁଛନ୍ତି। କୁମାର ମହାନ୍ତି ସେ ରଚନା କରିଥିବା ପଦ୍ୟ ତଥା ଗଦ୍ୟ ଉଭୟ ଭିତରୁ ହିଁ ସବାଆଗ ସ୍ୱୟଂ ଦିଶି ଯାଉଥିଲେ। ସବାଆଗ ପ୍ରେମୀଟିଏ, ସବାଆଗ ସମ୍ମତଟିଏ; – ପଦ୍ୟ କିମ୍ବା ଗଦ୍ୟ ଯାହା ହୋଇଥିଲେ ମଧ୍ୟ ସବାଆଗରେ କୁମାର ମହାନ୍ତି। ଆଖିରେ ଆଖିଏ ସଂବେଦନା, ଆପଣାକୁ ଦେଇ ଦେବାର ଏକ ନିତାନ୍ତ ସହଜ ଅଭିନୟଶୂନ୍ୟ ମଣିଷଟିଏ। ଏଇଟିକୁ ମଧ୍ୟ କ'ଣ ଆପଣ ସାହିତ୍ୟ ଭିତରେ ସାହିତ୍ୟିକର ଏକ ଶୈଳୀ ବୋଲି କହିବେ ?

ହଁ, ଗୋଟାଏ ଫରକ ଅବଶ୍ୟ ରହିଥିଲା। ନିଜର ରଚିତ ପଦ୍ୟଗୁଡ଼ିକୁ ସିଏ ଆବୃତ୍ତି କରି ପାରୁଥିଲେ, ଅନେକ ସ୍ଥଳରେ ଗାଇ ବି ପାରୁଥିଲେ। କବିତାର ସେହି ଆବୃତ୍ତି ନାମକ କର୍ମ କଦାପି ସବୁ କବିଙ୍କ ବେଳେ ଆଦୌ ସମ୍ଭବ ହୁଏନାହିଁ। କବିତା

ପାଠୋତ୍ସବମାନଙ୍କରେ ନିଜେ ଲେଖିଥିବା କବିତାଟିକୁ ତ ଅନେକେ ପ୍ରାୟ ଏକ କସରତ ସଦୃଶ ଏପରି ପାଠ କରନ୍ତି ଯେ, ଶୁଣୁଥିବା ସମୟରେ କର୍ତ୍ତାଜଣକ ସତେଅବା କ’ଣ ଗୋଟାଏ ଭୁରୁଡ଼୍ ମାରିଦେଇ ମଞ୍ଚତ୍ୟାଗ କରୁଥିବା ପରି ମନେ ହେଉଥାଏ। ସେତେବେଳେ ପଠିତ କବିତାଟି ଉପରେ ପ୍ରକୃତରେ ଭାରି ଦୟା ହୁଏ। କୁମାର ମହାନ୍ତି ସ୍ପଷ୍ଟତଃ ଏକାବେଳେକେ ଗୋଟିଏ ନିଆରା ପ୍ରତ୍ୟୟ ଦେଇ ନିଜର ପଦ୍ୟଧାଡ଼ି ଗୁଡ଼ିକର ଆବୃତ୍ତି କରି ପାରୁଥିଲେ ଏବଂ ଆମ ସମସ୍ତଙ୍କର କେଡ଼େ ଅଜାଣତରେ ସେହି ପ୍ରତ୍ୟୟଗୁଡ଼ିକୁ ଶ୍ରୋତାରୂପୀ ଆମ ସମସ୍ତଙ୍କର ଭିତରକୁ ସଂକ୍ରମିତ କରିଦେଇ ପାରୁଥିଲେ। ଆବୃତ୍ତିଟିର, ଗୀତଟିର ମାଧ୍ୟମରେ ହିଁ କବିତାର ବକ୍ତବ୍ୟଟିକୁ ଅଧିକ ଅନ୍ତରଙ୍ଗ ଭାବରେ ବୁଝିହୋଇ ଯାଉଥିଲା। ସେହି ଅନନ୍ୟ ଅଭିଜ୍ଞତାଟିକୁ ସ୍ମରଣ କରି ବର୍ତ୍ତମାନ କହିବାକୁ ଭାରି ମନ ହେଉଛି ଯେ, ଆପଣାର କବିତାଗୁଡ଼ିକୁ ଧାଡ଼ି ପରେ ଧାଡ଼ି ସୃଜିଯାଉଥିବା ସମୟରେ କୁମାର ମହାନ୍ତି ନିଶ୍ଚୟ ଏକାବେଳେକେ ଦୁଇଟିଯାକ କର୍ମ କରୁଥିଲେ, ଯୁଗପତ୍ ଭାବରେ ଲେଖି ଯାଉଥିଲେ ଏବଂ ଶୁଣି ଯାଉଥିଲେ। ସେହି କ୍ଷେତ୍ରରେ କେବେହେଲେ ଏକ କସରତ ବୋଲି କିଛି ନଥିଲା। ଆପଣାର ଧୀଷଣା ଅର୍ଥାତ୍ ଧୀଶକ୍ତିକୁ ମନ୍ଦର ପର୍ବତ କରି ଶବ୍ଦର ସାଗରକୁ ପ୍ରାୟ ଏକ ଆକୁଳ ସତର୍କତା ସହିତ ମନ୍ଥନ କଲେ ଯାଇ କାବ୍ୟ ସମ୍ଭବ ହୁଏ ବୋଲି ଓଡ଼ିଆ ସାହିତ୍ୟର ମଧ୍ୟଯୁଗରେ ଜଣେ କବି ଆମକୁ କେଡ଼େ ଗମ୍ଭୀର ଭାବରେ କହି ଯାଇଛନ୍ତି। ଏବେ, ଆମର ଏହି ନିତାନ୍ତ ଆଧୁନିକ ସମୟର କେତେ କବି ମଧ୍ୟ ସେଥିରେ ଅବଶ୍ୟ ସମର୍ଥନ ଜଣାଇବେ। କବି କୁମାର ମହାନ୍ତି ଏସବୁ ସହିତ ଓ୍ୱାକିବ୍‌ହାଲ୍ ଥିଲେ କି ନାହିଁ, ସେକଥା ଆଦୌ କହି ହେବନାହିଁ। ଏବେ ତ କବିସମ୍ପ୍ରଦାୟରେ ବହୁତ ସୂତ୍ରକାର କବିକର୍ମକୁ ପ୍ରାୟ ସମ୍ପୂର୍ଣ୍ଣ ଭାବରେ ଏକ ମାନସିକତା ବୋଲି କହୁଛନ୍ତି। ମାନସିକତା ନାମକ ସେହି ସମ୍ପଦର ମୂଲ୍ୟକୁ କଦାପି ଊଣା କରି ହେବନାହିଁ। ତଥାପି, ଆପଣାକୁ ବ୍ୟକ୍ତ କରିବାର ପ୍ରକ୍ରିୟା ସକାଶେ ରାଜି ହୋଇ, ଏପରି ଗୋଟିଏ ଅଭୟ ପାଖରେ ଆସି ପହଞ୍ଚିହୁଏ, ଯେତେବେଳେ କି ମାନସିକତା ସତେଅବା ଆଉକିଛି ବୁଝିଗଲା ପରି ଆପଣାଛାଏଁ ସିଂହାସନରୁ ଓହ୍ଲାଇ ଆସେ, ସେହି ବିପୁଳତରର କଥାକୁ ମାନେ ଏବଂ ଦ୍ୱିଜ ହୁଏ। କିପରି ଏକ ବିପୁଳତାର ବେଢ଼ ଭିତରେ ସଦାନୁସିକ୍ତ ହୋଇ ରହିଥିଲେ, କେବଳ ତଥାକଥିତ ସାହିତ୍ୟିକ ମୁହୂର୍ତ୍ତମାନଙ୍କରେ ନୁହେଁ, ନିରନ୍ତର।

କିଏ କାହିଁକି ଅସ୍ୱୀକାର କରିବ, କୁମାର ମହାନ୍ତି ହୁଏତ ଆଗ ଧାଡ଼ିଗୁଡ଼ିକୁ ନିଜ

ଭିତରେ ଗୀତରେ ଗାଇ ପାରୁଥିଲେ ଓ ତା'ପରେ ଯାଇ କଲମ ଧରି ସେଗୁଡ଼ିକୁ ଲେଖିବାର ଦ୍ୱିତୀୟ କାର୍ଯ୍ୟକୁ କରୁଥିଲେ। ଏମିତି ସଂଗୀତକାର ସକଳ ଯୁଗରେ ରହି ଆସିଛନ୍ତି, ଯେଉଁମାନେ କି ଆଗ ରାଗ, ମୂର୍ଚ୍ଛନା ଅର୍ଥାତ୍ ଲହରୀ ପାଇଛନ୍ତି ଓ ତା'ପରେ ସେଥିରେ ଶବ୍ଦକୁ ବସାଇ ସଂଗୀତ ଅଥବା କବିତା ବାଡ଼ିଦେଇ ପାରିଛନ୍ତି। ଏଠାରେ ପୁରାତନ ଫ୍ରାନ୍ସ ଦେଶର Troubadour ମାନଙ୍କୁ ବହୁତ ସଂଗତି ସହିତ ଏକ ଦୃଷ୍ଟାନ୍ତ ରୂପେ ହୁଏତ ସ୍ମରଣ କରାଯାଇ ପାରିବ। ଜଣେ କବି କ'ଣ ଗୋଟିଏ କଥା କହିବାକୁ ମନ କରୁଛି, ପ୍ରଥମେ ତାହାରି ଅନୁରୂପ ସ୍ୱର ଆସି ତା'ସହିତ ସତେଅବା ଭାନୁମତୀ ଖେଳ ଆରମ୍ଭ କରିଦେବ। ଖେଳ ଖେଳୁ ଖେଳୁ ଧରା ବି ଦେବ ଏବଂ ତା'ପରେ ସତେଅବା ଆଗରୁ ଲେଖା ହୋଇ ରହିଥିବା ଶବ୍ଦଧାଡ଼ୀଗୁଡ଼ିକ ଆସି ପହଞ୍ଚି ଯାଉଥିବେ। ପ୍ରାୟ ଏକ ସାଉଁଟି ଆଣିବାର ପରିରମଣ ଆରମ୍ଭ ହୋଇଯିବ। ଗୋଟାସୁଦ୍ଧା ଗୋଟିଏ ଆତ୍ମ ଆବିଷ୍କାର ପରି ଲାଗୁଥିବ। ତାହାକୁ ଆମେ ଆହୁରି ଖୁସୀ ହୋଇ ବିଶ୍ୱ-ଆବିଷ୍କାରର ଏକ ପ୍ରକ୍ରିୟା ବୋଲି ମଧ୍ୟ କହିପାରିବା। ଯାବତୀୟ ଅର୍ଥରେ ଗୋଟିଏ ଆତ୍ମସାକ୍ଷାତ୍କାର ଅର୍ଥାତ୍ ବିଶ୍ୱସାକ୍ଷାତ୍କାରର ପ୍ରକ୍ରିୟା କୁମାର ମହାନ୍ତି ଯେକୌଣସି କବିତା ପାଠୋତ୍ସବର ପଙ୍‌ଗତରେ ବସି କବିତା ଆବୃତ୍ତି କରୁଥିବା ସମୟରେ ଏକ ସଂପୂର୍ଣ୍ଣ ବ୍ୟତିକ୍ରମ ରୂପେ ହିଁ ବାରିହୋଇ ପଡୁଥିଲେ। ସିଏ ନିଜେ ହିଁ ଅଧିକତର ପରିମାଣରେ ଦିଶି ଯାଉଥିଲେ, ସମବେତ ହଂସରାଡ଼ିମାନଙ୍କର ମେଳରେ ସେହି ugly duckling ପରି ଦେଖା ଯାଉଥିଲେ ଏବଂ ବୋଧହୁଏ ସେହି କାରଣରୁ ହିଁ ଅନାୟାସରେ ଆକର୍ଷିତ କରି ନେଉଥବଲେ। ସିଏ ଏବଂ ତାଙ୍କର କବିତା, – ସକଳ ଅବସରରେ ସିଏ ସ୍ୱୟଂ ହିଁ ଅଧିକ ମନେ ରହି ଯାଉଥିଲେ, – କବିତାଟି ସମ୍ଭବତଃ ଭୁଲି ହୋଇ ଯାଉଥିଲା; ଭୁଲି ହୋଇ ଯାଇ ଧନ୍ୟ ହେଉଥିଲା। ସର୍ଜନାତ୍ମକତାର ବଜାରରେ ଏଇଟି ପ୍ରକୃତରେ ଏକ ବିରଳ ଘଟଣା !

ଶାସ୍ତ୍ରୀୟ ସଂଗୀତର ଯାବତୀୟ ବେଭାର ପରି ଏବେ କବିତା ମଧ୍ୟ କ'ଣ ସବୁ ପାଞ୍ଚି ତାହାରି ଫାନ୍ଦରେ ଯାଇ ପଡ଼ିବାଲାଗି ଇଚ୍ଛା କରି ପକାଇଲା କି ? ଶାସ୍ତ୍ରୀୟ ସଂଗୀତରେ ରାଗ ଓ ରାଗିଣୀମାନଙ୍କୁ ଆଗରୁ ବାନ୍ଧି ଦିଆଯାଇଛି। ତୁମେ ଆଗ ସେଗୁଡ଼ିକର ଶୃଙ୍ଖଳାକୁ ମାନିବ, ଅଲବତ ମାନିବ। ମାତ୍ରା, ତାଳ, ଗାଇବାର ଅନୁକୂଳ ପ୍ରହରମାନ, – ସବୁକିଛି ନିର୍ଦ୍ଧାରିତ ହୋଇ ରହିଛି। ବହୁତ ସମୟରେ, ସତେଯେପରି କ'ଣ ଏକ ଶାସ୍ତ୍ରୀୟ ରୀତିକୁ ହିଁ ଅଧିକ ମାନି, ଆମ କବିମାନେ ସ୍ୱରଚିତ କବିତାଗୁଡ଼ିକ

ପଛରେ ଏମିତି ଲୁଚି ରହି ଯାଇଥାଆନ୍ତି ଯେ, ଆଉ ସବୁକିଛି ସବୁମନ୍ତେ ଚିକିଚିକି ହୋଇ ଦିଶୁଥାଏ ଏବଂ ସଂପୃକ୍ତ ଆମ ସମସ୍ତଙ୍କୁ ହତଚକିତ କରି ଦେଉଥାଏ ପଛକେ, ମାତ୍ର ସେମାନେ ମୋଟେ ଦୃଷ୍ଟିଗୋଚର ହୁଅନ୍ତି ନାହିଁ। କବିନାମକ ସେହି ମହାନ୍ କାରିଗରଟା ଭିତରକୁ ମୋଟେ ପଶି ହୁଏନାହିଁ। କବି ପାଖରେ ହାର ମାନି ତା'ର କବିତାକୁ ବୁଝିବା, ଇଏ ପୁଣି କେଉଁ ରାଜ୍ୟର ରୀତି କେଜାଣି ? ଆରେ ବାବୁ, ତୁମେ ଯଦି ନିଜକୁ ଚିହ୍ନା ଦେବନାହିଁ, ତେବେ କବିତାର କୁଲା ଢାଉଁଢାଉଁ କରି ଆମକୁ କାହିଁକି ଓଲୁ କରି ରଖିବାକୁ ମନ କରିବ କହିଲ। ଆମର ଭାରି ସୌଭାଗ୍ୟ ଯେ, କବି କୁମାର ମହାନ୍ତିଙ୍କ ମୁହଁରୁ ତାଙ୍କ କବିତାବୃତ୍ତିଟିକୁ ଶୁଣୁଥିବା ସମୟରେ ଆମକୁ ସେପରି କୌଣସି ଧର୍ମ ସଂକଟ ମଧ୍ୟରେ ଆଦୌ ପଡ଼ିବାକୁ ହେଉନଥିଲା। କବି ନିଜେ ଆସି ଆମ ପାଖରେ ପହଞ୍ଚିଯାଉଥିଲେ, ସିଏ ଜଞ୍ଜିରକୁ ଠକ୍ ଠକ୍ କରିବା ମାତ୍ରେ ଆମ ଦ୍ୱାରଟା ଖୋଲି ବି ଯାଉଥିଲା, ମୋଟେ କୁଣ୍ଠାପ୍ରକାଶ କରୁନଥିଲା। ଆମେ ସବୁ ଗୋଟାଏ ସଭାରେ ବସିଛୁ ବୋଲି ସମ୍ପୂର୍ଣ୍ଣ ଭାବରେ ପାସୋରି ଯାଉଥିଲା। କବିତାକୁ ଶୁଣି ଆମେ ଶ୍ରୋତାଏ ହାଲୁକା ହୋଇଯାଉଥିଲୁ ଏବଂ ଆମକୁ ସାମନାରେ ପାଇ କବି ମଧ୍ୟ କେଡ଼େ ହାଲୁକା ହୋଇଯାଉଥିଲା। ଏହି ହାଲୁକା ହୋଇଯିବାଟା – ଉଭୟ ପକ୍ଷର ଏହି ହାଲୁକା ହୋଇଯାଇ ପାରିବାଟା, – ସକଳ ସୃଜନାତ୍ମକତାର କାହାଣୀରେ ହୁଏତ ତାହାକୁ ହିଁ ସବୁଠାରୁ ବଡ଼ ସିଦ୍ଧି ବୋଲି ଅନୁମାନ କରାଯାଇ ପାରିବ। ଏକ ସର୍ବକ୍ଷମ rapport ବୋଲି ବି କୁହାଯିବ, ଯାହା ସଂପୃକ୍ତ ଦୁଇ ପକ୍ଷକୁ ଗୋଟାସୁଦ୍ଧା କତିକୁ ନେଇଆସି ପାରେ। ଶ୍ରୋତା ମଧ୍ୟରେ ମଧ୍ୟ ସ୍ରଷ୍ଟାର ଏକ ଉତ୍ତରଣ ଘଟାଇ ଆଣେ କି କ'ଣ କେଜାଣି, ସେତେବେଳେ ଭେଟିବାର ଏକ ଅନ୍ତର୍ଗତ ଭୂମିକାରେ ସେ ମଧ୍ୟ ଆଉ ମୋଟେ ନିଷ୍କ୍ରିୟ ହୋଇ ରହେ ନାହିଁ, – ଗୋଟା ସୁଦ୍ଧା ସାଙ୍ଗ ହୋଇଯାଏ, – ଶ୍ରୋତା ଓ ସ୍ରଷ୍ଟା ଆମେ ସମସ୍ତେ ସତକୁ ସତ ଏକ ସହୋଦର ପଣରେ ବନ୍ଧା ହୋଇ ରହିଛୁ ବୋଲି ଏହି ପୃଥ୍ୱୀ ମଧ୍ୟ ଚାଲୁଛି ବୋଲି ଅନୁଭବ ବି କରୁ।

କବି କୁମାର ମହାନ୍ତିଙ୍କୁ ମନେପକାଇ ତାଙ୍କ କବିତାକୁ ଏକ ସ୍ୱତନ୍ତ୍ର ଚିହ୍ନଟ ଦେବା ନିମନ୍ତେ ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡା ଜାଗାଏ ଲେଖିଛନ୍ତି ! "କବିତା କିପରି ସିଧା ସିଧା ହୃଦୟରେ ପହଞ୍ଚିବ ମଣିଷର, ସେଥିପାଇଁ ତାଙ୍କର ଗଭୀର ନିଷ୍ଠା"। ...ଏକା ଏକା କହୁଥିଲେ ବି "ସଖା ସଖା" ଭାବରେ ସେ ସଦାବେଳେ, ଯେତେବେଳେ ଯୋଉଠି ହେଉ ଦେଖା। ଆଗ ସ୍ୱୟଂ କବି ସିଧା ସିଧା ମଣିରେ ହୃଦୟରେ ପହଞ୍ଚି ପାରୁଥିଲେ

ତା'ର କବିତାଟା ବି ସେହିପରି ସିଧା ସିଧା ହୃଦୟରେ ପହଞ୍ଚିବ ଅଥବା ଆଗ କବିତା ସିଧା ସିଧା ହୃଦୟରେ ପହଞ୍ଚି ପାରୁଥିଲେ କବି ବି ସିଧା ସିଧା ମଣିଷର ହୃଦୟରେ ଯାଇ ପ୍ରବେଶ କରି ପାରିବ, କବି ପଣ୍ଡା ସେହି ସମ୍ପର୍କରେ ଏହି ସନ୍ଦର୍ଭରେ ଅବଶ୍ୟ କିଛି କହିନାହାନ୍ତି। ପୁନଶ୍ଚ, ଏହି କ୍ଷେତ୍ରରେ ସହଜରେ କଥାଟି ଏହିପରି ବୋଲି ଗାରଟିଏ ପକାଇଦେଇ କିଛି କହିବା ହୁଏତ ଆଦୌ ସହଜ କଥା ନୁହେଁ। କିନ୍ତୁ, ଯଦି ମଣିଷ ସ୍ୱୟଂ ସିଧା ସିଧା ହୃଦୟରେ ପ୍ରବେଶ କରିପାରୁଥାଏ, ତେବେ ସିଏ ଲେଖୁଥିବା ଖାଲି କବିତା ବା ପଦ୍ୟ କାହିଁକି ତା' ଗଦ୍ୟ ମଧ୍ୟ ସିଧା ସିଧା ହୃଦୟ ଭିତରେ କାହିଁକି ପ୍ରବେଶ କରି ନପାରିବ ? ଏହିଭଳି ବିଶ୍ୱାସ ଆମ ଭିତରେ ଦାନା ବାନ୍ଧି ଆସିବାକୁ ଆରମ୍ଭ କରିବା ସଂଗେ ସଂଗେ ସଂପୂର୍ଣ୍ଣ ସାହିତ୍ୟଟିର ଆୟତନ ବିଷୟରେ ମଧ୍ୟ ହୁଏତ କେତେ ଅନ୍ୟ ପ୍ରକାରର ଉଦ୍‌ବେଳନ ଆସି ଅନୁଭୂତ ହେବେ, ଯାହାକି ସାହିତ୍ୟତତ୍ତ୍ୱର ସାଂପ୍ରତିକ ବିପଣିମାନଙ୍କରେ ଆଦୌ ସେତେ ସହଜରେ ସ୍ୱୀକୃତି ପାଇ ପାରିବେ ନାହିଁ।

'ଆନନ୍ଦଛନ୍ଦ' ନାମକ ନିଜର ଗୋଟିଏ କବିତା ସଂକଳନର ଆଦ୍ୟ କଥନରେ ଶ୍ରୀ କୁମାର ମହାନ୍ତି ଅନାମଙ୍କର ମେଦିନୀକୁ ଏହିପରି ଭାବରେ ସୂଚାଇ ଦେବାକୁ ଇଚ୍ଛା କରିଛନ୍ତି। "ମୋ ସୃଷ୍ଟି ସମାଜ ପାଇଁ ଉଦ୍ଦିଷ୍ଟ। ନିଜର ନିଛକ ଭାବବିଳାସ ପାଇଁ କଳା ସୃଷ୍ଟି, ଏପରି ତତ୍ତ୍ୱ ଆମପାଇଁ ଅର୍ଥହୀନ, ଉଦ୍‌ଭଟ, ଆମେ ବିଶ୍ୱାସ କରୁ, ପରିବେଶର ପ୍ରାସଙ୍ଗିକତା ନେଇ ପ୍ରକୃତି ଯେପରି ବିଭିନ୍ନ ରୂପ ଓ ରଙ୍ଗର ବୃକ୍ଷ, ଲତା ଓ ଜୀବ ସୃଷ୍ଟି କରେ, ସେହିପରି ସାମାଜିକ ପ୍ରାସଙ୍ଗିକତା ହିଁ ମାନବିକ ସୃଷ୍ଟିର ଆବେଦନ ଓ ସ୍ଥିତିର ନିୟାମକ ହୁଏ। ସାମାଜିକ ପ୍ରାସଙ୍ଗିକତା ବିନା କୌଣସି କଳାସୃଷ୍ଟି ଉଦ୍ଦେଶ୍ୟହୀନ, ଅବାନ୍ତର"। "ଅନାମ ବାୟାର ଗୀତ" ନାମକ ଆଉ ଏକ ସଂକଳନରେ ସାଂପ୍ରତିକ ସଂସାରର ବିରାଟ ବିଡ଼ମ୍ବନାଗୁଡ଼ିକର ଆଭାସ ଦେଇ ସିଏ ଆହୁରି କେତେକଥା ନିତାନ୍ତ ସିଧା ସିଧା ବି କହି ପକାଇଛନ୍ତି, "ଯେ ହୋଇଲା ଝୁଣ୍ଟିଆଳ, ଗୋଡ଼ାଣିଆ / ସେ ହେଲା ସୁଜନ / ଯେ ଚାଲିଲା ସୁଅ ପରି / ଅଝଟିଆ ଅମାନିଆ / ସେ ହେଲା ଏ ନାମର ସମାଜେ / ଅନାମ ଦୁର୍ଜନ।" ଅନ୍ୟ ସଂକଳନଟିରେ ସେହି ଗୋଟିଏ ଧ୍ୱନି; ନାମୀଙ୍କର ଦୁନିଆରେ ଆମେ ଯେ ଅନାମ ଦୁର୍ଜନ। ଅନାମମାନେ ଭାଙ୍ଗିବେ, ଅର୍ଥାତ୍ ପ୍ରତିବାଦ କରିବେ। ପ୍ରତିମାଗୁଡ଼ାକୁ ଭାଙ୍ଗିବା ପାଇଁ କୁମାର ମହାନ୍ତି କେଡ଼େ ନିଷ୍କାପଟ ଭାବରେ ଉଦ୍‌ବୋଧନ ଦେଇଛନ୍ତି। ଯୁଗେ ଯୁଗେ ଭାଙ୍ଗିଥିବା ଏବଂ ପ୍ରତିବାଦ କରିଥିବା କୃଷ୍ଣ, ବୁଦ୍ଧ ଏବଂ ଯୀଶୁଙ୍କର ଧାଡ଼ିରେ ଆପଣାକୁ ମଧ୍ୟ ପରିଜନ ଭଳି ସାମିଲ୍ କରି ସିଏ

ଆପଣାର କବିତା ଧାଡ଼ିଗୁଡ଼ିକର ପଶ୍ଚାତ୍‌ରେ ରହିଥିବା ସତ୍ୟଗୁଡ଼ିକୁ ହିଁ ଉଖାରି ଆଣିଛନ୍ତି। ସେହି ସତ୍ୟଟିକୁ ଆଧାର ତଥା ପ୍ରେରଣାରେ ପରିଣତ କରି ଗୋଟିଏ ଅନ୍ୟ ସମ୍ପର୍କର ସମ୍ଭାବନା ଯେ ଏହି ପୃଥିବୀରେ ସର୍ବବିଧ ଅସଲ ପ୍ରତିବାଦକୁ ବ୍ୟକ୍ତ କରି ଆସିଛି, କବି ତାହାରି କଥା କହିଛନ୍ତି।

ଏହି 'ମୁଁ' ହେଉଛି ପ୍ରତିବନ୍ଧକ, ଅସଲ ମାୟା ଯାହାକି ମନୁଷ୍ୟମାନଙ୍କୁ ଏତେ ଅନମନସ୍କ କରି ରଖିଛି। ତେଣୁ, ଦିଗ୍‌ବଳୟର ବକ୍ଷରେ ବିଶ୍ୱାସୀମାନଙ୍କ ନିମନ୍ତେ ଏକ ଅନ୍ୟ ପୃଥିବୀ ଆମକୁ ସଦା ଆକର୍ଷିତ କରିବାରେ ଲାଗିଛି। କୁମାର ମହାନ୍ତିଙ୍କର ଭାଷାରେ, "ମୁଁ ଚାହୁଁଛି ଏପରି ଦୁନିଆ / ଯେ ଦୁନିଆ ରୁଦ୍ଧ ନୁହେଁ 'ଅହଂ' ନର୍ଦ୍ଦମାରେ।" ପୁନଶ୍ଚ, କାହିଁକି ଏ 'ମୁଁ'ର ଦୌରାତ୍ମ୍ୟ ? / ସମସ୍ତେ କି ହେବାନାହିଁ ଏକ / ଏ ମେରୁରୁ ସେ ମେରୁ ପର୍ଯ୍ୟନ୍ତ ?" ତେଣୁ, "ଛେଦିବାକୁ ଛଳନାର ସମସ୍ତ ସମ୍ପର୍କ / ନିଜର କରିବ ତମେ / ଅପରକୁ / ଗୋଟିଏ ସମ୍ପର୍କସୂତ୍ରରେ।" ଶେଷରେ, ମୁଣ୍ଡି ମାରିଲା ପରି, "ମୁଁ ଚାହୁଛି ଏପରି ଦୁନିଆ / ...ଯେ(ଉଁ) ଦୁନିଆର ଆତ୍ମା ହେବ ମଣିଷ ପଣିଆ / ମଣିଷ ମଣିବ ଯହିଁ ଅପରକୁ / ଆପଣାଭଳିଆ"। / ଏବଂ, "ରକ୍ତ ନୁହେଁ / ରଚି ଯହିଁ ସମ୍ପର୍କର ହେବ ମୂଳଦୁଆ।"ରଚି ଯେ ବସ୍ତୁତଃ ସମ୍ପର୍କର ମୂଳଦୁଆ ହେବ, ଏ କଥାଟି ଖାଲି କବିତାରେ କୁହା ଯାଇନାହିଁ। ସେହି ସତ୍ୟକୁ ସବୁ ମଣିଷଙ୍କର ପହୁଞ୍ଚ ଭିତରକୁ ଆସି ପାରିବା ନିମନ୍ତେ ଏକାଧିକ ଆଦର୍ଶବାଦର ଉଦ୍‌ଭବ ହୋଇଛି, ବହୁ ବାଦର ଚଢ଼େଇଙ୍କୁ ମନୁଷ୍ୟଭାଗ୍ୟର ଆକାଶରେ କେତେ କେତେ ଉତ୍ତେଜନାରେ ଉଡ଼ାଇ ଦିଆଯାଇଛି। ବାଦ ଯେତିକି, ଏକାଧିକ କାରଣ ତଥା ଅକାରଣରେ ସେଥିରୁ ଦଶଗୁଣ ବିବାଦ ମଧ୍ୟ ଜନ୍ମଲାଭ କରିଛନ୍ତି। କେତେ ମୁଣ୍ଡ ହଣା ହୋଇଛନ୍ତି, – ଶିବିର ଶିବିର ଭିତରେ ଯୁଦ୍ଧ ଲାଗିଛି ଯାହାକୁ ଆମେ ଭଦ୍ରମାନେ ବିଶ୍ୱଯୁଦ୍ଧ ବୋଲି କହିଛୁ। ସେଗୁଡ଼ିକ ଏବେ ମଧ୍ୟ ଚାଲିଛି। ଯଦି ସାହିତ୍ୟ ସତକୁ ସତ ମନୁଷ୍ୟକୁ ତଥା ଏହି ପୃଥ୍ୱୀଖଣ୍ଡକୁ ଭଲ ପାଇ ଏତେଯାଏ ସତକୁ ସତ ରାଜି ହୁଏ, ତେବେ ସାହିତ୍ୟସାହିର ଆଉ କେତେ କେତେ ଗରିଷ୍ଠ ତଥା ବରିଷ୍ଠ ତଥା ଅବଶ୍ୟ ଘୋର ପ୍ରମାଦ ଗଣିବେ। ସାହିତ୍ୟ ପଥଭ୍ରଷ୍ଟ ହୋଇଗଲା ବୋଲି ରଡ଼ି ଦେବେ। କବି କୁମାର ମହାନ୍ତି ଯେ ଏତେ ପ୍ରସାର ଦେଇ ଆପଣାର ଧର୍ମଟିକୁ ଅନୁଭବ କରିଥିଲେ, ଆମେ ସେଥିପାଇଁ ତାଙ୍କୁ ଅଭିନନ୍ଦନ ହିଁ ଜଣାଇବା।

ଏବଂ, ସେହି କାରଣରୁ, କବି "ମୋର କଥା ଅଛି ଅସୁମାରି" ବୋଲି କହିଛନ୍ତି।

କବି ଯଦି ସମୁଚିତ ଭାବରେ କବିତାକୁ ବନ୍ଧୁ କରି ଜୀବନକୁ ମନ କରି ପାରିବ, ତେବେ ତା'ର କହିବା ଲାଗି ପ୍ରକୃତରେ ଅସୁମାରି କଥା ହିଁ ରହିବ! ନିଜ ଭିତରକୁ ସତେଅବା ସତକୁ ସତ ଏହି ବିଶ୍ୱଭଳି ଆଖିଟିଏ ସାଙ୍ଗରେ ନେଇ ପ୍ରବେଶ କରି ପାରିଲେ ଏବଂ ନିଜ ଭିତରେ ଆପଣାର ଅସଲ ତଥା ଶୁଭତମ ଅସ୍ପୃହାଗୁଡ଼ିକର ସନ୍ଧାନ ପାଇ ବିଶ୍ୱ ମଧ୍ୟରେ ସତକୁ ସତ ପ୍ରବିଷ୍ଟ ହୋଇ ପାରିଲେ ଓ ଉଚିତ ଡୋରଗୁଡ଼ିକରେ ବାନ୍ଧି ହୋଇଯାଏ ପାରିବାଟାକୁ ହିଁ ସ୍ୱଜୀବନ ଏବଂ ତେଣୁ ସ୍ୱକବିତ୍ୱର ସର୍ବମୂଳ ଉପଲବ୍ଧି ବୋଲି ସମଝି ନେବାକୁ ଆରମ୍ଭ କଲେ ଏଠି ଆମେ ସବୁ ମଣିଷ "ମୋର କଥା ଅଛି ଅସୁମାରି" ବୋଲି ନିଶ୍ଚୟ କହିପାରନ୍ତେ। ଆମ ଯେଝା ଯେଝାର ତାତ୍କାଳିକ ପୃଥିବୀଟି ଆମକୁ ଏପରି ଏକାଧିକ ପ୍ରସୀମନ ଦ୍ୱାରା ଭିଡ଼ି ଭିଡ଼ି ରଖି ଦେଇଥାଏ ଯେ, ଏଠି ଆମେ କେଡ଼େ ଭବ୍ୟ ଭାବରେ ହିଁ ଅଳପରେ ବୋଧ ହୋଇ ରହିଥାଉ, ଅଜ୍ଞତାକୁ ସୁଖ ମଣୁ, ଗାର ଡେଇଁବାକୁ ଓ ବାଡ଼ ଉଠାଇବାକୁ ଡରି ମରୁଥାଉ। ସୃଜନାତ୍ମକତା ହିଁ ଆମର ଏହିଭଳି ଜୀବନମାନଙ୍କରେ gadfly ଭଳି କାର୍ଯ୍ୟ କରେ, ଡାଆଁସ ପରି କାମୁଡ଼ି ପକାଏ। ଅସଲ କବି ଏହିପରି ନିଜର ଅସୁମାରି କଥା କହିବାର ରହିଛି ବୋଲି ପ୍ରାୟ ଏକ ରାଜ ସମାରୋହରେ ଆମ ଦୁଆରଟି ପାଖରେ ପହଞ୍ଚିଯାଏ। ଆମ ଲାଗି ଅଭିନନ୍ଦନୀୟ ହୁଏ। ଓଡ଼ିଆ ସାହିତ୍ୟରେ ଏଡ଼େ ସହଜ ଶବ୍ଦରେ ସେହି କଥାଟିକୁ କହି ପାରିଥିବାରୁ କବି କୁମାର ମହାନ୍ତିଙ୍କୁ ଚାଲ ଆମେ ପ୍ରଣାମ କରିବା।

ଅସୁମାରି ସକଳ କଥା ମଧ୍ୟରେ କବିଙ୍କର ମୂଳ ପ୍ରଶ୍ନ ସମ୍ଭବତଃ ମାତ୍ର ତିନୋଟି: ଜୀବନ କି ଖାଲି ଉଦର ପାଇଁ ମୋଟେ ନୁହେଁ, ମଣିଷ କି ଖାଲି ଗୋଲାମ ହେବ ଏବଂ ଭଲ ପାଇବା କି ନିଜେ ନିଜକୁ? ଏହି ଜୀବନଟା ଯେ କାଳି ଉଦର ପାଇଁ ମୋଟେ ନୁହେଁ, ଉଦର ଭରିଲେ ଯାଇ ଜଣେ ମଣିଷ ସେହି କଥାଟିକୁ ବୁଝିପାରିବ। ଲୋଭୀ ରାକ୍ଷସଟାର ଉଦର ସିନା କେବେହେଲେ ହଁ ଭରିବାକୁ ଇଚ୍ଛା କରେନାହିଁ, ମାତ୍ର ମଣିଷର ଉଦରଟା ଭରି ଦେବାକୁ କଦାପି ସେଇ କଥାଟାକୁ ହିଁ ବିନ୍ଦୁ କରି ପୃଥିବୀଯାକ ପଚାଶ ରକମର କୋଳାହଳ ବା ଶୋଷଣ ଜାରି କରି ରଖିବାର କୌଣସି ପ୍ରୟୋଜନ ନଥାଏ। ତଥାପି, ଏଠି ସବୁକାଳେ ଏପରି ଲୋଭୀବୃନ୍ଦ ରହି ଆସିଛନ୍ତି, ଯେଉଁମାନେ କି ବହୁତ ବହୁତ ଅନ୍ୟମାନଙ୍କୁ ବଞ୍ଚିତ କରି ନିଜର ଦଶ ଦଶଟା ଉଦର ଭର୍ତ୍ତି କରି ରଖିବାର ଫିକର କରି ଆସିଛନ୍ତି। ପୃଥିବୀକୁ ବଡ଼ ଅସୁନ୍ଦର କରି ରଖିଛନ୍ତି। ମୂଳଦୁଆ ଯେ ସମସ୍ତଙ୍କ ନିମନ୍ତେ ଅନ୍ନ ହୋଇ ରହିବ, ଏହି କଥା ଏବେ ମଧ୍ୟ ସମ୍ଭବ ହୋଇପାରୁ

ନାହିଁ । ତେଣୁ, ସାହିତ୍ୟ, କଳା, ସଂସ୍କୃତି ତଥା ଆହୁରି କେତେ କ'ଣ ନାମରେ ଉପରର ମହଲାଗୁଡ଼ିକ ଯାହା ଯେଉଁଠି ତିଆରି ହେଉଛି, ସେଗୁଡ଼ିକ ମୋଟେ ସୁସ୍ଥ ହୋଇପାରୁ ନାହିଁ । ପୃଥିବୀରେ ଲକ୍ଷ୍ମୀ ବୃଦ୍ଧି ପାଉଥିଲେ ମଧ୍ୟ ମଣିଷଟା ଲକ୍ଷ୍ମୀଛଡ଼ା ହୋଇ ରହିଛି । ସବୁକିଛି ସତେଯେପରି ସେଇଠାରେ ହିଁ ବିଗିଡ଼ି ଯାଉଛି, ଯାହାଫଳରେ କି ଆମର କେଡ଼େ କେଡ଼େ ସ୍ୱପ୍ନ ପାଣି ଫାଟି ଯାଉଛି । ଅସଲ ସଂହତିଗୁଡ଼ିକ ସମ୍ଭବ ହୋଇପାରୁ ନାହିଁ । ବିଶ୍ୱତମାମ କବିଚିତ୍ତଟା ଭାରି ଦୁଃଖୀ ହୋଇ ରହିଛି । ରୁଟି ବା ଅନ୍ନ ସଂହତିର ମୂଳଦୁଆ ହୋଇ ପାରିଲେ, ଗୋଲାମୀର ଅବକାଶମାନ ମଧ୍ୟ ବହୁତ ଊଣା ହୋଇଯିବ ।

ଆମର ପୃଥିବୀ ଆମ ଇପ୍‌ସିତ ଉଦୟଗୁଡ଼ିକର ଉପଯୁକ୍ତ ହୋଇପାରୁ ନାହିଁ, ଜଣେ କବି ଚିତ୍ତର ସମ୍ଭବତଃ ତାହାହିଁ ହେଉଛି ଗୋଟାଏ ବଡ଼ ଦୁଃଖ । ଏଠି ହନୁଟା ହିଁ ଜଗତି ଉପରେ ବସିଛି ଏବଂ ବାନ୍ଧି ନେଇଯିବେ ବୋଲି ପୋଲିସ୍‌ବାଲା ଚାରିଆଡ଼େ ମହଜୁଦ ହୋଇ ରହିଛନ୍ତି, ଗୋଲାମୀର ଗାରଗୁଡ଼ିକୁ ଜଗି ବସିଛନ୍ତି । କବି କୁମାର ମହାନ୍ତି ଏହି ଉଭୟ imageକୁ ବ୍ୟବହାର କରି ଆମ ସାଂପ୍ରତିକ ସ୍ଥିତିଗୁଡ଼ିକର ଏକ ସିଧା ବର୍ଣ୍ଣନା ଦେବାକୁ ଚେଷ୍ଟା କରିଛନ୍ତି । ଜୀବନର ହାଟରେ ଜୀବନମୂଲ୍ୟଗୁଡ଼ିକର ଦର ବିଷୟରେ ପ୍ରଶ୍ନ ବି କରିଛନ୍ତି । ଦୁଃଖର ଦର ପଚାରିଛନ୍ତି, ସୁଖର ଦର ପଚାରିଛନ୍ତି । ଆଉ ଗୋଟିଏ ଅବକାଶରେ ସିଏ ଆମର ଏହି ବହୁ ପ୍ରସାଧନଯୁକ୍ତ ବଜାରମାନଙ୍କରେ ଯାବତୀୟ ସକଳ କିଛିର ମୂଲ ରହିଥିବା ବେଳେ 'ମଣିଷର ମୂଲ ନାହିଁ କିଛି' ବୋଲି ସତେଅବା କେଡ଼େ ଖେଦ ଅଥଚ କେଡ଼େ ତୋଡ଼ରେ କହିଛନ୍ତି । ଆମକୁ ଆମ ମିଛ ତପସ୍ୟାଗୁଡ଼ିକରୁ ଟଳାଇ ଦେବାର ଅଭିଳାଷରେ କ'ଣ ସେଭଳି କରିଛନ୍ତି କି ? ଦରମାନଙ୍କୁ ପଚାରି ପଚାରି କବି ପୃଥ୍ୱୀର ଦର, ପରମର ଦର, କୈବଲ୍ୟର ଦର, ବିଶ୍ୱାସର ଦର ଏବଂ ସତେଅବା ଆହୁରି ଅଧିକ ସ୍ଥାନୀୟ ତଥା ନିର୍ଦ୍ଦିଷ୍ଟ ଭାବରେ ଓଡ଼ିଆ ଜାତିର ଦର ବି ପଚାରିଛନ୍ତି । ପ୍ରାୟ ସବୁଯାକ ଶ୍ଳେଷର ବାଣ ମାରିସାରି ସିଏ ସତେ ଅବା ଆମର ଅଧିକ କତିକୁ ଚାଲି ଆସୁଛନ୍ତି ଏବଂ ଅସଲ ଗୁମରଗୁଡ଼ିକର ରହସ୍ୟ କହି ଦେଉଛନ୍ତି । "ଡରୁଥିବା ଯାଏ ଡର ହିଁ ଡରାଏ" ବୋଲି କହୁଛନ୍ତି । "ମିତ ବସିଲେ ତ କଥା ସରିଲା, ବାନ୍ଧିପାରିବେ କି ପୁଲିସ୍‌ବାଲା ?" ବୋଲି କହିଛନ୍ତି ଏବଂ କୁମାର ମହାନ୍ତିଙ୍କର ସମୁଦାୟ ଠାଣି ଏବଂ ଭାବକ୍ଷେତ୍ରର ଚାହାଣିଟି ଏପରି ନିଜସ୍ୱ ଏବଂ ଶକ୍ତିଶାଳୀ ଭାବରେ ଏଭଳି ଅନନ୍ୟ ଯେ, ତାହା କେବଳ ତୁଚ୍ଛା ଶବ୍ଦଗୁଡ଼ାଏ ହୋଇ ଆମ କାନଭିତରେ ପଶି ସାଇତା ହୋଇ ରହି ଯାଆନ୍ତି ନାହିଁ । ଆମକୁ ମଧ୍ୟ ସଚଳ କରିପାରନ୍ତି । ଯିଏ ତାଙ୍କୁ ନିଜ କବିତାଗୁଡ଼ିକୁ ଗାଇବା ବା ଆବୃତ୍ତି କରିବାର ଦେଖିଥିବ, ସିଏ କଦାପି ଖାଲି ତାଙ୍କ ଶବ୍ଦଗୁଡ଼ିକୁ ହିଁ ନୁହେଁ, ତାଙ୍କ ଭିତରର ଆହୁରି ବହୁତ କିଛିକୁ ସାଉଁଟିନେଇ ପାରିଥିବ । ସତେଅବା

ନିଜର ସଂସାରଟି ଭିତରେ ମଧ୍ଯ ମିତ ବସି ପାରିଲେ ପୁଲିସ୍‌ବାଲା ଆଉ ମୋଟେ ବାନ୍ଧି ପାରିବେ ନାହିଁ। କଥାଟିର ଗୁମରକୁ ପାଇ ଯାଇଥିବ। ସମ୍ଭବତଃ ଏଇଟି ହେଉଛି ଏକ କାରଣ, ଯେଉଁଟି ପାଇଁ କେତେକ କବି ଆମ ପାଖରେ ଜଣେ ଜଣେ ମିତ ହୋଇ ରହିଯାଆନ୍ତି, ସବୁ କବି ମୋଟେ ରହି ପାରନ୍ତି ନାହିଁ।

କବିଟିଏ ମିତ ହୋଇ ପାରିଲେ ଆଗକୁ ପ୍ରକୃତରେ ବାଟଟାଏ ବି ଦିଶିଯାଏ। ମୋତେ କତିପୟ ମିତ ମିଳିଲେଣି ବୋଲି ପ୍ରତ୍ୟୟ ପାଇ କବି ମଧ୍ୟ କେଡ଼େ ସହଜରେ ଓହ୍ଲାଇ ଆସିପାରେ, ଆମର ମିତ ହେବା ସକାଶେ ଓହ୍ଲାଇଆସେ ଏବଂ "ଧଳା ଘୋଡ଼ା ଏବେ ସଜାରେ କୁମର ଏଥର ଛଳନା ଶେଷ ବୋଲି" କହିପାରେ।

– ୨ –

ଅନାମ ଏକ ଗୋଷ୍ଠୀ, ସାଧାରଣ ଅର୍ଥରେ ଗୋଟିଏ ସାହିତ୍ୟଗୋଷ୍ଠୀ, ସାହିତ୍ୟିକମାନଙ୍କର ଗୋଷ୍ଠୀ। ଗୋଟିଏ ପ୍ରତିବାଦ-ଗୋଷ୍ଠୀ। ମୁଖ୍ୟତଃ ଓଡ଼ିଆ ସାହିତ୍ୟର କାରବାର ମଧ୍ୟରେ ଏକ ପ୍ରତିବାଦ-ଗୋଷ୍ଠୀ। ତଥାପି ସାହିତ୍ୟକୁ ଆଳକରି ଅଧିକତର ପ୍ରଗାଢ଼ତା ସହିତ ଗୋଟିଏ ଅନ୍ୟ ଜୀବନାକାଙ୍କ୍ଷା ରଖିଥିବା ଗୋଷ୍ଠୀ। କେତେଜଣ ତତ୍କାଳୀନ ତରୁଣଙ୍କୁ ଏକତ୍ର କରି ଆଣିଥିବା ଗୋଷ୍ଠୀ। ହଁ, ବ୍ୟକ୍ତିମାନଙ୍କୁ ଏକାଠି କରିଆଣି ତ ସଚରାଚର ଯାହାକିଛି ଗୋଷ୍ଠୀ ଗଢ଼ା ହୋଇଥାଏ। ସାହିତ୍ୟର ଆମ ବିଶେଷ କ୍ଷେତ୍ରଟିରେ ମଧ୍ୟ ତାହାର କାହିଁକି ବ୍ୟତିକ୍ରମ ହୁଅନ୍ତା ? ତଥାପି, ଅନାମକୁ ଏକ ନାମ ରୂପେ ଗ୍ରହଣ କରି ସେତେବେଳେ ଯେଉଁ ମେଳ ଗଢ଼ି ଉଠିଥିଲା, ସେଥିରେ ଯାବତୀୟ ମୂଲ୍ୟବ୍ୟଞ୍ଜନାରେ ସମ୍ଭବତଃ ବ୍ୟକ୍ତି ପଛରେ ଏବଂ ଗୋଷ୍ଠୀ ଆଗରେ। ନିତାନ୍ତ ସଚେତନ ଭାବରେ ସେମାନେ ସେହିପରି ପରିମଳଟିଏ ସମ୍ଭବ କରି ଆଣିବା ନିମନ୍ତେ ଚେଷ୍ଟା ମଧ୍ୟ କରିଥିଲେ। ଅନାମର ଆରମ୍ଭ ପର୍ବରେ ଯେଉଁ ପତ୍ରିକାଟି ବାହାରୁଥିଲା, ସେଥିରେ ଲେଖକମାନଙ୍କର କୌଣସି ନାମ ନଥିଲା ଏବଂ ଏପରିକି ଲିଖିତ ବିଷୟଗୁଡ଼ିକରେ ମଧ୍ୟ କୌଣସି ଶୀର୍ଷକ ଦିଆଯାଉ ନଥିଲା। ଅବଶ୍ୟ ପରେ 'ଅନାମଙ୍କ ପତ୍ର'ରେ ସେଥିରେ ପରିବର୍ତ୍ତନ ଘଟିଲା। ବିଷୟମାନଙ୍କରେ ଶୀର୍ଷକ ରହିଲା ଓ ଲେଖମାନେ ମଧ୍ୟ ସେଗୁଡ଼ିକରେ ଆସି ଉଭା ହେଲେ।

'ଅନାମଗୋଷ୍ଠୀ' ସମ୍ପର୍କରେ ଏହି ଆଲୋଚନାକୁ ଆମେ ଶ୍ରୀ କୁମାର ମହାନ୍ତିଙ୍କ ଠାରୁ ହିଁ ଆରମ୍ଭ କରିବା। ସମ୍ମିଳିତ ଉଦ୍ୟମର ଆଭିମୁଖ୍ୟ ବିଷୟରେ ସଂକ୍ଷେପରେ ଏକ ଧାରଣା ଦେଇ ସେ ଜାଗାଏ ଲେଖିଛନ୍ତି: "ଏକ ଦିଗରେ ଇଉରୋପୀୟ ସାହିତ୍ୟର କପି କରା ରୋମାଣ୍ଟିକ ଧାରା ଓ ଅନ୍ୟ ଦିଗରେ ବିଦେଶୀୟ ସାମ୍ୟବାଦର ସ୍ଲୋଗାନ୍‌ଧର୍ମୀ

ହୋ'ହଲ୍ଲାରେ ଅତିଷ୍ଠ ଆମେ କେତେ ଜଣ ପ୍ରସିଦ୍ଧିବିହୀନ କବି ଓଡ଼ିଆ ସଂସ୍କୃତିର ଆଧାରରେ ଓଡ଼ିଆ କବିତାର ଅଭିବୃଦ୍ଧି କାହିଁକି ନ ହେବ ବୋଲି ପ୍ରଶ୍ନ କରିଥିଲୁ। ଆମେ ଅଙ୍ଗ ନିଭାଉଥିବା ଛଳନାବାଦୀ ସମାଜର ଦ୍ୱୈତ ନୈତିକତା, ଭଣ୍ଡ ଧର୍ମ ଓ ଅସାମାଜିକ ବୀଭତ୍ସତାର ମୁଖୋସ୍ (ମୁଖା) ଖୋଲିବାର ଶପଥ ନେଇ ଆରମ୍ଭ କରିଥିଲୁ 'ଅନାମଗୋଷ୍ଠୀ' ଓ ଅନାମ କବିତା।" ପ୍ରତିପକ୍ଷ ଶିବରଗୁଡ଼ିକ ପୂର୍ବରୁ ହିଁ ଥିଲେ। ସେଗୁଡ଼ିକରେ ମଧ୍ୟ ଏହି ସମାନ ଉତ୍ସାହରେ ଉତ୍ତାପ ଏବଂ ତାରୁଣ୍ୟବେଗ ଇତ୍ୟାଦି ମଧ୍ୟ ନ ରହିବାର ଆଦୌ କୌଣସି କାରଣ ନାହିଁ। ପୁରୀରେ ଏକାବେଳେକେ ସେହି ମୂଳରୁ ହିଁ ଅସୂୟାମାନେ ବେଶ୍ କ୍ରିୟାଶୀଳ ହୋଇ ଉଠିଥିଲେ। ଅନାମର ସଦସ୍ୟମାନଙ୍କୁ ମାରିବାର ଧମକ ଦିଆ ଯାଇଥିଲା। ଘରେ ନିଆଁ ଲଗାଇ ଦେବାର ଧମକ ମଧ୍ୟ ଆସିଥିଲା। ଅନାମ ପତ୍ରିକା ପୋଡ଼ା ବି ଯାଇଥିଲା, ସଭାସମିତିରେ ଅନାମମାନଙ୍କୁ ଭର୍ତ୍ସନା ମଧ୍ୟ ଖୁବ୍ ହୋଇଥିଲା। ସବୁଠାରୁ ସମ୍ଭବତଃ ବେଶୀ ସେହି ପୁରୀରେ। ପୁରୀରେ ଶ୍ରୀ କୁମାର ମହାନ୍ତିଙ୍କର ଘରଟି ହିଁ ଅନାମ ଆନ୍ଦୋଳନର ପ୍ରାଣକେନ୍ଦ୍ର ରୂପେ କାର୍ଯ୍ୟ କରୁଥିଲା।

ଅନାମ ଗୋଷ୍ଠୀର ଏକ ସିଂହାବଲୋକନ କରୁଥିବା ସମୟରେ 'ଅନାମଙ୍କ ପତ୍ର' ଜାନୁଆରୀ ୧୯୮୮ ସଂଖ୍ୟାରେ ଆଲୋଚକ ଶ୍ରୀ ମଧୁ ମହାନ୍ତିଙ୍କୁ 'ଅନାମୀଙ୍କ ବାପା' ବୋଲି ବର୍ଣ୍ଣନା କରିଛନ୍ତି। ଘଟଣାବଳୀ କହୁଛି ଅନାମମାନେ ପୂର୍ବରୁ ହିଁ ମେଳ ଗଠନ କରି ସାରିଥିଲେ, ନିଜ ପତ୍ରିକାର ପ୍ରଥମ ସଂଖ୍ୟାକୁ ବାହାର କରି ସାରିଥିଲେ। ଶ୍ରୀ ମହାନ୍ତି ତା'ପରେ ଆସି ସେମାନଙ୍କ ସହିତ ଯୋଗ ଦେଲ। ସମସ୍ତେ ଯେ ତାଙ୍କୁ ବାପା ବୋଲି, ବନ୍ଧୁ, ବିଚାରଦାତା ତଥା ବାଟ ଦେଖାଇ ପାରିବାର ବ୍ୟକ୍ତିରୂପେ ସ୍ୱୀକାର କରିନେବେ, ସେଥିରେ ଆଦୌ କୌଣସି ସନ୍ଦେହର ଅବକାଶ ନାହିଁ। ସେହି ଅନାମଙ୍କର ଏକ ବର୍ଣ୍ଣନାରୁ ଆମେ ଶ୍ରୀଯୁକ୍ତ ମହାନ୍ତିଙ୍କର ହୁଏତ ବେଶ୍ ଏକ ଧାରାକ୍ରମରେ ପରିଚୟଟିଏ ପାଇ ମଧ୍ୟ ପାରିବା: "ଇନ୍‌କମ୍ ଟିକସ୍ ଅଫିସରରୁ କଟକ ହାଇକୋର୍ଟରେ ଓକିଲାତି। ନୀଳକଣ୍ଠ, ଗୋଦବରୀଶ, ରାଜେନ୍ଦ୍ର ନାରାୟଣ ସିଂ ଦେଓ ଇତ୍ୟାଦିଙ୍କ ସହ 'ଗଣତନ୍ତ୍ର ପରିଷଦ'ର ସ୍ରଷ୍ଟା। 'ଜନତା' ଓ 'ଅବ୍‌ଜର୍‌ଭର୍' ନାମକ ଦୁଇଟି ଖବର କାଗଜର ସମ୍ପାଦକ ଓ ପ୍ରକାଶକ ଥିଲେ। ...ଏକାଧାରରେ ଲେଖକ, ସାମ୍ବାଦିକ ଓ ସମାଜସେବୀ। ଓଡ଼ିଶାରେ ରାଡ଼ିକାଲ୍ ହ୍ୟୁମାନିଷ୍ଟ ପାର୍ଟିର ସଭାପତି।" ପ୍ରସଙ୍ଗକ୍ରମେ ଆମେ ସମ୍ଭବତଃ ଜାଣିରଖିବା ଯେ, ପ୍ରଖ୍ୟାତ ରାଜନୀତିକ ନେତା ଓ ଯୋଦ୍ଧା ଏବଂ ରୁଷିଆରେ ଲେନିନ୍ ଓ ଷ୍ଟାଲିନ୍‌ଙ୍କ ପାର୍ଶ୍ୱବର୍ତ୍ତୀ ହୋଇ ରହିଥିବା ଶ୍ରୀ ମାନବେନ୍ଦ୍ର ନାଥ ରାୟ ରୁଷିଆରୁ ଭାରତବର୍ଷ ଆସି ଏଠାରେ ରାଡ଼ିକାଲ୍ ହ୍ୟୁମାନିଷ୍ଟ ପାର୍ଟିର ପ୍ରତିଷ୍ଠା କରିଥିଲେ। ମଧୁ ମହାନ୍ତିଙ୍କ ଜୀବନରେ ଆଉଜଣେ ଆଲୋଚକ ଚାରିଟି ଡାୟମେନ୍‌ସନ୍ ରହିଛି ବୋଲି ମତ ଦେଇଛନ୍ତି।

ଚାରିଟା ପ୍ରସ୍ତର ପ୍ରତିନିଧିତ୍ୱ କରୁଥିବା ଏକାବେଳେକେ ଚାରିଟା ଦର୍ପଣ। ସେଗୁଡ଼ିକ ହେଉଛନ୍ତି: ଫ୍ରଏଡିଆନ ଯୌନକ୍ଷୁଧା, ନୀତ୍‌ଶୀଆନ୍ ପୌରୁଷ, ମାର୍କ୍‌ସୀଆନ୍ ଅର୍ଥଲୋଭ ଓ ଚୈତନ୍ୟମାର୍ଗୀ ବୈଷ୍ଣବଧର୍ମ। ଏହି ଚାରୋଟିଯାକ ଖୁମ୍ବ ଉପରେ ତାଙ୍କର 'ଜିନିଅସ୍' ପ୍ରତିଷ୍ଠିତ ବୋଲି ଆଲୋଚକ ମତ ଦେଇଛନ୍ତି।

ପ୍ରକୃତରେ ଅତ୍ୟନ୍ତ ସାଂଘାତିକ ଜୀବନଟାଏ ହୋଇଥିବ। ଚାରିଟାଯାକ ଖୁମ୍ବ ସମ୍ଭବତଃ କ୍ୱଚିତ୍ ଏକତ୍ର ଛିଡ଼ାହୋଇ ଏକ ସମଗ୍ର structureର ପ୍ରତୀତି ଦେବାରେ ସମର୍ଥ ହେଉଥିବେ ଓ ଯାହିତାହି ହୋଇ ତିନିଟା ସିଧା ହେବାକୁ ମନ କଲାବେଳକୁ ଚତୁର୍ଥଟା ହୁଏତ ବଙ୍କାଇ ବି ଯାଉଥିବ। ଅନାମ ଗୋଷ୍ଠୀର 'ବାଇଆ'ମାନଙ୍କ ଉପରେ ସେହି ହରକତଟାର ମଧ୍ୟ କ'ଣ କିଛି ପ୍ରଭାବ ପଡ଼ିଥିଲା ? ସେକାଳର ସେମାନେ ତ ବର୍ତ୍ତମାନ କେତେଭଳି ସାହୀରେ ବାଣ୍ଟି ହୋଇଗଲେଣି। ସେମାନଙ୍କୁ ଜଣଜଣ କରି ଗୋଟିଏ ଗୋଟିଏ ଖାସ୍ ସନ୍ତକ ତଥା ନାମରେ ବି ବେଳେ ବେଳେ ଚିହ୍ନି ହୋଇଯାଉଛି। ସମ୍ଭବତଃ ପ୍ରଧାନତଃ ସେହି କାରଣରୁ ଅନାମମାନଙ୍କର ଆଉ କୌଣସି ମେଳଣ ଏବେ ବସୁନାହିଁ। ହଁ, ସେମାନଙ୍କ ମଧ୍ୟରୁ ହୁଏତ ପ୍ରତ୍ୟେକଙ୍କୁ ସେମାନଙ୍କର ଏକ ନିଜ ପରିଚୟରେ କିଛି କିଛି ଚିହ୍ନ ହେଉଛି ସିନା, କିନ୍ତୁ ସେମାନଙ୍କୁ ଏକଦା ଯୋଡ଼ି ରଖିଥିବା ସୂତାଟା ପ୍ରାୟ ଦେଖିବାକୁ ମିଳୁନାହିଁ। ବେକର ମାଳିଟିକୁ ସେମାନେ ଜାଣତ ବା ଅଜାଣତରେ କାହିଁକି ଯେ ଛିଣ୍ଡାଇ ଅନ୍ୟମନା ହୋଇ ବାହାରି ଆସିଛନ୍ତି, ସେମାନେ ଆପେ ମଧ୍ୟ ହୁଏତ ସେ କଥାଟିକୁ ଲକ୍ଷ୍ୟ କରିନାହାନ୍ତି। ହଁ, ପଣ୍ଡିତ ନୀଳକଣ୍ଠ ଦାଶ ଶ୍ରୀ ମଧୁ ମହାନ୍ତିଙ୍କର ମାନସପିତା ଥିଲେ ବୋଲି ଏକ ମନ୍ତବ୍ୟ ବି ଶୁଣିବାକୁ ମିଳିଥାଏ। ଏହି ସବୁ ଯାବତୀୟ ମତୋକ୍ତିକୁ ସହାୟକ ରୂପେ ବ୍ୟବହାର କରି ବାପା ମଧୁ ମହାନ୍ତିଙ୍କର 'ଅନାମ' ନାମକ ସେହି ଗୋଷ୍ଠୀରୂପ ଭାବସନ୍ତାନଟିର ଚରିତାଚାରଟିକୁ ଇଚ୍ଛା କଲେ ଆମେ କିଞ୍ଚିତ୍ ଅଧିକ ନିକଟବର୍ତ୍ତୀ ହୋଇ ଉଖାରି କରି ଅବଶ୍ୟ ଦେଖି ପାରିବା।

ଅନ୍ୟମାନେ ଏକଜୁଟ ହୋଇ ଆସୁ ଆସୁ ଏବଂ ଆଗକୁ ପାଦ ପକାଉ ପକାଉ କ'ଣ ଧାସ୍‌ଭିତରେ ପଡ଼ିଯାଇ ଆପଣାକୁ ଓଡ଼ିଆ ବୋଲି ଘୋଷଣା କରିଥିଲେ। ଆମେ ଯେଉଁମାନେ ଓଡ଼ିଶାରେ ଜନ୍ମ ହୋଇଛୁ, ଆମ ସାମୂହିକ ସତ୍ୟକଳ୍ପନା ତଥା ଜୀବନ ମୂଲ୍ୟ ଗୁଡ଼ିକୁ ଆମେ ତାହାରି ସ୍ୱାଭାବିକ ଆହ୍ୱାନ ତଥା ପ୍ରେରଣାଗୁଡ଼ିକୁ ଶୁଣିବା ଯୋଗ୍ୟ ହୋଇ ଏହି ଓଡ଼ିଶାରେ ହିଁ ବଞ୍ଚିବୁ, – ଏଥିଲାଗି ପୁଣି ଗୋଷ୍ଠୀ ଗଢ଼ି ବଜାରଟାଏ ବସାଇ ଘୋଷଣାଟାଏ ପୁଣି କାହିଁକି କରିବୁ ? ଏହି ଅତିସଚେତନତା ପଛରେ ଅନେକ ସ୍ଥଳରେ କିଛି ଅସ୍ୱାଭାବିକତା ମଧ୍ୟ ରହିଥାଏ କି ? ଯଦି ଆମେ ସାହିତ୍ୟକୁ ମନ କରିଥାଉ, ତେବେ ଏଠି ଓଡ଼ିଆ ଭାଷା ହିଁ ଆମର ସର୍ବପ୍ରଥମ ଭାଷା ଓ ତେଣୁ ଆମର ସବୁଠାରୁ

ଅଧିକ ପ୍ରିୟ ଭାଷା ହୋଇ ରହିବ। ପରସ୍ପରକୁ କହିବା ପାଇଁ ଗୋଟାଏ ମଞ୍ଚର କାହିଁକି ଆବଶ୍ୟକତା ରହିବ ? ଶ୍ରୀ ମଧୁ ମହାନ୍ତିଙ୍କର ଜୀବଦ୍ଦଶାରୁ ହିଁ ଭାବପ୍ରେରଣାର ମସୀପାତ୍ରଟି ଏପରି ଏକପାଖିଆ ହୋଇ କାହିଁକି ଇଡ଼ିଯିବାକୁ ମନ କଲା କେଜାଣି ? ତାଙ୍କର ଶ୍ରାଦ୍ଧବାର୍ଷିକୀରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ଅନାମ ମେଳଣରେ ସାଧାରଣ ଆଲୋଚନା ନିମନ୍ତେ "ଅବକ୍ଷୟୀ ଓଡ଼ିଆ ସାହିତ୍ୟର ପରିପ୍ରେକ୍ଷୀରେ ଆଧୁନିକ ଦରବାରୀ ସାହିତ୍ୟର ରୂପରେଖ" ନାମକ ବିଷୟଟିଏ ରଖା ଯାଇଥିଲା। ଅନାମଙ୍କର ପତ୍ର (ବସନ୍ତ, ୧୯୯୩, ପୃଷ୍ଠା-୪)ରେ ତାଙ୍କ ଗୋଷ୍ଠୀର କାବ୍ୟ-ଆନ୍ଦୋଳନଟିର ବିଶେଷ ପରିଚୟଟିଏ ପ୍ରଦାନ କରି ଶ୍ରୀ କୁମାର ମହାନ୍ତି ମଧ "ସମସ୍ତ ଭାବ-ବ୍ୟଞ୍ଜନାର ମାଧ୍ୟମ କେବଳ ଛନ୍ଦ, ଏବଂ ଛନ୍ଦ ଛଡ଼ା କଳା ଅସ୍ତିତ୍ୱହୀନ" ବୋଲି କହିଛନ୍ତି। ଏକଥା ଗୁଡ଼ିକୁ ଅଲବତ୍ ବୁଝି ହେଉଛି। ଏହି ସବୁକିଛି ଏକ ସାହିତ୍ୟିକ ଦୃଷ୍ଟିର କଥା, ଏକ ସଂପୂର୍ଣ୍ଣ ସୁସ୍ଥ ରୁଚି ବା ଅରୁଚିର ବିଷୟଟିଏ। କିନ୍ତୁ ଜଣେ ସତୀର୍ଥ ଅନାମଙ୍କ ପାଖକୁ ଲିଖିତ ଗୋଟିଏ ଚିଠିରେ ଶ୍ରୀ କୁମାର ମହାନ୍ତି An Oriya Principle of Criticism ବୋଲି କଥାଟିଏ ଉଲ୍ଲେଖ କରିଛନ୍ତି। କଥାଟିକୁ ବୁଝିବା ନିମନ୍ତେ ମଥା ହିଁ ପାଉ ନାହିଁ। ଏସବୁ ଗହନ ଭିତରେ ପଶି ସଂପୃକ୍ତ ପଥଚାରୀମାନେ ଆପଣାର ଅସଲ ଆବେଦନ ଜଗତଟିକୁ ମାରା କରିଦେବାକୁ ମନ କଲେ କାହିଁକି କେଜାଣି ? ଆଉ ଗୋଟିଏ ଚିଠିରେ ସିଏ social satire ଓ ଶାଣିତ ବ୍ୟଙ୍ଗ ସମ୍ପର୍କରେ ମଧ କହିଛନ୍ତି। ଏସବୁକୁ ସାହିତ୍ୟରେ ଏବେ ଆବଶ୍ୟକ ବୋଲି ମନ୍ତବ୍ୟ ଦେଇଛନ୍ତି। ତାହାର ପ୍ରାସଙ୍ଗିକତା ଗୁଡ଼ିକୁ ବୁଝିବାରେ ଆଦୌ କୌଣସି ଅସୁବିଧା ହେଉନାହିଁ। ଅନାମ ପାଖରେ ସତକୁ ସତ କୃତଜ୍ଞତା ଜଣାଇ ଆସିବାକୁ ମଧ ଇଚ୍ଛା ହେଉଛି।

ତଥାପି, ଆଉ ଏକ ଅବକାଶରେ ସିଏ ଓଡ଼ିଆ ଜାତିର ସଂଜ୍ଞା କ'ଣ ହେବ ବୋଲି ପ୍ରଶ୍ନ କରିଛନ୍ତି। ଓଡ଼ିଆ ସାହିତ୍ୟରେ ସମାଲୋଚନାର ମାନଦଣ୍ଡ କ'ଣ ହେବ ବୋଲି ଜାଣିବାକୁ ଅଡ଼ି ବସିଛନ୍ତି। ସାହିତ୍ୟର ଯେକୌଣସି ମଞ୍ଚରେ ଏଇଟି ପ୍ରକୃତରେ ଏକ ସାଂଘାତିକ କଥା, ବସ୍ତୁତଃ ଏକ ଅସାହିତ୍ୟିକ କଥା। ଭିତରେ କ'ଣ ଗୋଟାଏ ଅସହିଷ୍ଣୁତାକୁ ପ୍ରଶ୍ରୟ ଦିଆଯାଇ ନଥିଲେ କୌଣସି ସମୀକ୍ଷାଦୃଷ୍ଟି ସେପରି ଆଦୌ ଦାବି କରିବାଲାଗି ମନ ବଳାଏ ନାହିଁ। ଏହି ମୂଳ ଉତ୍ତାପଟିରୁ ମଞ୍ଜି ଉଡ଼ି ଅନାମମାନେ କିଞ୍ଚିତ୍ ଶବ୍ଦ ବୈପୁଲ୍ୟର ସାହାଯ୍ୟ ନେଇ ଉତ୍ର ସାହିତ୍ୟ ଓ ଉତ୍ର ସଂସ୍କୃତିର ଚର୍ଚ୍ଚାଟାଏ ମଧ ଆଣି ବାଡ଼ିଦେବାକୁ ଚେଷ୍ଟା କରିଛନ୍ତି। ସେହି ସନ୍ଦର୍ଭରେ ପଣ୍ଡିତ ନୀଳକଣ୍ଠଙ୍କର ଆର୍ଯ୍ୟ-ଜୀବନ ତଥା କଳିଙ୍ଗ-ସଭ୍ୟତା ସମ୍ବନ୍ଧରେ ଏକଆଖିଆ ଉତ୍ସାହପୂର୍ଣ୍ଣ ଉଦ୍‌ଗାରଗୁଡ଼ାକ ମଧ ମନେ ପଡ଼ିଯାଉଛି ଏବଂ ଓଡ଼ିଆ ଜାତିନାମକ ଉଲ୍ଲାସଧର୍ମୀ mythଟାକୁ ଚକଚକ

କେତନଟାଏ ପରି ଉଡ଼ାଇବାକୁ ମନ କଲାମାତ୍ରକେ ଜଗନ୍ନାଥ ଯେ ତତ୍କ୍ଷଣାତ ଟଣା ହୋଇ ଆସିଯିବେ, ସେଥିରେ ଆଚମ୍ବିତ ହେବାର କୌଣସି କାରଣ ରହିବା ଉଚିତ ନୁହେଁ। ଜଗନ୍ନାଥ ଯେ ଏହି ପ୍ରକ୍ରିୟାରେ କ୍ରମଶଃ କେତେକ ଚକ୍ରାନ୍ତରେ ପଡ଼ି ଏକ ଗୃହସମ୍ପତ୍ତିରେ ପରିଣତ ହେଲେଣି ଓ ଆମେ କତିପୟ ତାଙ୍କୁ ଅତିଶ୍ରଦ୍ଧାରେ 'ଆମର' ବୋଲି କହିଲୁଣି, ତାହାକୁ ସଂପୃକ୍ତ ସେହିମାନଙ୍କର ଅନ୍ଦାଜକ୍ଷେତ୍ରଟାର ଏକ ଶୋଚନୀୟ diminishment ବୋଲି ହୁଏତ କୁହାଯିବ। ଆମେ-ଦେଖିବାକୁ ପାଉଛୁ, ସେହି ୧୯୭୩ ମସିହାରୁ ହିଁ 'ଅନାମ' ପତ୍ରିକାଟିକୁ "ଜଗନ୍ନାଥ ମୈତ୍ରୀଚେତନା-ଭିତ୍ତିକ ଅନାମ-ସାହିତ୍ୟିକଙ୍କର ଏକ ସଂକଳନ" ବୋଲି ଲିଖିତ ଭାବରେ ଘୋଷଣା କରାଯାଇଛି। ସେହି ସଂଖ୍ୟାଟିରେ ହିଁ 'ବୁଧେ ଭାବିବେ କି?' ନାମକ କୋଠିଟି ମଧ୍ୟରେ ଏପରି ବିଜ୍ଞାପନଟିଏ ଦିଆଯାଇଛି! "ଓଡ଼ିଶାରେ ତିନୋଟି ବିଶ୍ୱବିଦ୍ୟାଳୟ। କୌଣସି ଗୋଟିକରେ ଯଦି Jagannath-chairଟିଏ ସୃଷ୍ଟି କରାଯାଇ ଓଡ଼ିଶାର ସଂସ୍କୃତି, ଭାଷା, ଧର୍ମ, ଦର୍ଶନ ଓ ସମାଜତତ୍ତ୍ୱ (ଯାହା ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ିଉଠିଛି), ଇତ୍ୟାଦି ବିଷୟରେ ଗବେଷଣା ହୁଅନ୍ତା, – ତା'ହେଲେ ଓଡ଼ିଶାର ଜ୍ଞାନ ଦିଗନ୍ତ ପ୍ରସାରିତ ହୁଅନ୍ତା, – ଓଡ଼ିଆଏ ଆତ୍ମାଭିମାନୀ ହୁଅନ୍ତେ ଏବଂ ଏକବିଂଶ ଶତାବ୍ଦୀକୁ ଏକ ପ୍ରାଣବନ୍ତ ଓଡ଼ିଆ ଆମନ୍ତ୍ରଣ କରିବାର ଅହମିକା ପାଆନ୍ତା।"

କବି କୁମାର ମହାନ୍ତିଙ୍କର କୃତିରେ "ଭୀମ ଭୋଇଙ୍କର ପ୍ରଗାଢ଼ ମାନବବାଦୀ ସଂବେଦନଶୀଳତା ସାମ୍ପ୍ରତିକତାର ପୁଟ ଦିଆଯାଇ କେବଳ ଅଧିକ ତତ୍ତ୍ୱଗମ୍ଭୀର ନୁହେଁ, ଆହୁରି ବର୍ଣ୍ଣାଢ଼୍ୟ ତଥା ମର୍ମସ୍ପର୍ଶୀ ହୋଇପାରିଛି ବୋଲି ତାଙ୍କର ସ୍ତୁତିଚାରଣା କରି ଆଉଜଣେ ଅନାମ ଲେଖିଛନ୍ତି। ସାହିତ୍ୟକୁ ଅଧ୍ୟାତ୍ମ ଦ୍ୱାରା ଉତ୍ତରଣସମର୍ଥ କରି ପାରିଥିବା ସଂସାର ଭିତରର ଭୀମ ଭୋଇ ଆପଣାର ବ୍ୟାଖ୍ୟା ମଧ୍ୟରେ ଜଗନ୍ନାଥଙ୍କୁ ଯେଉଁ ନିର୍ଦ୍ଦିଷ୍ଟ ବିନ୍ୟାସ ଆଣି ଦେଇଥିଲେ, ଅନାମମାନେ ବି ତାହାର ଆଲୋଚନା କରି ପାରିଥାଆନ୍ତେ, ତେବେ ହୁଏତ ସେମାନଙ୍କୁ ଅଧିକ ସ୍ୱଚ୍ଛ ଭାବରେ ବୁଝି ହୋଇଥାନ୍ତା। ଅନାମଗୋଷ୍ଠୀ ତାହା କଲେନାହିଁ ଓ ଜଗନ୍ନାଥଙ୍କୁ ଏପରି ଭାବନାମର ନିରଙ୍କୁଶତା ସହିତ ଯାବୁଡ଼ି ଧରିଲେ ଯେ ତଦ୍ଦ୍ୱାରା ଆହୁରି କିଛି ଆଗକୁ ଆସି ଏବର ଏହି ଅଗାଡ଼ି-ଯୁଗଟାରେ ଜଗନ୍ନାଥ ପ୍ରେରଣାର ସମଗ୍ରାୟତନଟିରେ ଯାବତୀୟ ଅର୍ଥରେ ଏକ ଅବମୂଲ୍ୟାୟନ ହିଁ ଘଟିଲା। ସେହି ସମ୍ପତ୍ତିକରଣର ପ୍ରକ୍ରିୟାଟିରେ ଅନାମମାନେ ମଧ୍ୟ ତଥାପି ଏକ ସହାୟତା କଲେ ବୋଲି କୁହାଯାଇ ପାରିବ କି? ଏବଂ ଜଗନ୍ନାଥତ୍ୱର ମହିମା ମଧ୍ୟରେ ତଥାକଥିତ ଓଡ଼ିଆତ୍ୱର ବହଳ ବିଡ଼ମ୍ବନାଗୁଡ଼ିକୁ ଏକାଠି ଭରିଦେଇ ସ୍ୱୟଂ ଅନାମଚେତନାଟା ବି ଆଖିର କୋଉଠି ଆସି ପହଞ୍ଚିଛି, ଥରେ ଥୟ ହୋଇ

ଦେଖିଲେ ! ସତକୁ ସତ ନିଜର ଭୂମିଟିକୁ ଭଲ ପାଇଲେ ଏବଂ ତାହାରି ନିମନ୍ତେ ନିଜକୁ ସତକୁ ସତ ତିଆରି ଆଣିବାକୁ ମନ କଲେ ଆମକୁ ଓଡ଼ିଶା କେଡ଼େ ଅନ୍ୟପ୍ରକାରେ ମହିମାମୟ ତଥା ଆହ୍ୱାନପୂର୍ଣ୍ଣ ହୋଇ ଦିଶିପାରନ୍ତା ! ପୁନଶ୍ଚ ଆଧ୍ୟାତ୍ମ ପଛକେ ପଛକୁ ଥାଉ, ପୂର୍ଣ୍ଣତଃ ସାହିତ୍ୟର ସମଗ୍ର ପ୍ରସ୍ଥଟି ଦେଇ ଦେଖିଲେ ମଧ୍ୟ ଜଗନ୍ନାଥ ମଧ୍ୟ କେତେ ଅନ୍ୟପ୍ରକାରେ ଦୃଷ୍ଟିଗୋଚର ହୁଅନ୍ତେ ଏବଂ ଆମଲାଗି ବହୁ ବିମୋଚନର କାରଣ ହୁଅନ୍ତେ । ସାରଳା ଦାସଙ୍କ ଠାରୁ ଆରମ୍ଭ କରି ସାଲବେଗଙ୍କ ପର୍ଯ୍ୟନ୍ତ ଏହି ଭୂମିର ଯେଉଁ ସ୍ମରଣୀୟ ପ୍ରେରଣା ପିଣ୍ଡମାନେ ଜଗନ୍ନାଥଙ୍କୁ ସେମାନଙ୍କର ରଚନାଚୟରେ ପରିଚିତ କରାଇଛନ୍ତି, ସେମାନେ କେହି ତାଙ୍କୁ ଜାତିତ୍ୱର ଅଡ଼ାଟା ଭିତରେ ଆଣି ଭର୍ତ୍ତି କରିଦେବାର କୌଣସି ଆଗ୍ରହ ଦେଖାଇ ନାହାନ୍ତି । ଆମେ ଏବର ଆଗ୍ରହୀମାନେ କ'ଣ ସେମାନଙ୍କୁ ନିର୍ବୋଧ ବୋଲି ହିଁ କହିବା ?

ବ୍ରହ୍ମପୁର ସହରକୁ ଡକା ଯାଇଥିବା 'ଅନାମ ମେଳଣ-୧୯୯୦'ର ସୂଚନା ଦେଇ ଯେଉଁ ବୃତ୍ତପତ୍ରଟି ଡାକଦ୍ୱାରା ପ୍ରେରଣ କରାଯାଇଥିଲା, ସେଥିରେ ଏଥର ମେଳଣଟିରେ ଓଡ଼ିଆ ଜାତିତ୍ୱର ଏକ ବିଧିବଦ୍ଧ ଚିହ୍ନଟ ପାଇଁ ମିଳିତ ଭାବରେ ଚିନ୍ତା କରାଯିବ ବୋଲି ଆଭାସ ରହିଥିଲା । "ଓଡ଼ିଆ କିଏ ? କେଉଁ ନିର୍ଦ୍ଦିଷ୍ଟ ଗୁଣ ବା ଚିହ୍ନଟ ଲାଗି ଆମେ ଅନ୍ୟଙ୍କ ଠାରୁ ଭିନ୍ନ ? ଆମର ସ୍ୱକୀୟତା କ'ଣ ? ଆମର ସ୍ୱକୀୟ ଇତିହାସ କାହିଁ ?" – ଇତ୍ୟାଦି, ଇତ୍ୟାଦି । ମଣିଷମାତ୍ରକେ ଆମେ ସମସ୍ତେ ପରସ୍ପର ଠାରୁ କେତେ ଅଭିନ୍ନ, ନ୍ୟାୟତଃ ସବାଆଗ ସେଗୁଡ଼ିକ ବିଷୟରେ ସୁସ୍ଥ ସଚେତନ ହୋଇ ପାରିଲେ, ତା'ପରେ ଯାଇ ଅଧିକ ସୁସ୍ଥ ଭାବରେ ଗୋଟିଏ ଗୋଟିଏ ଜାତି ହିସାବରେ ଆମେ ପରସ୍ପର ଠାରୁ କେତେ ଭିନ୍ନ ବା ଅନନ୍ୟଟିର ହୁଏତ ବିଚାରଟିଏ କରିହୁଏ ବୋଲି ମଧ୍ୟ ସମାନ୍ତର ମତଟିଏ ପୃଥିବୀରେ ଏବେ ମଧ୍ୟ ରହିଛି । ବ୍ୟକ୍ତିକୁ ବିଳ କରି ଖାଲି ନୁହେଁ, ତଥାକଥିତ ସମଷ୍ଟିଟାକୁ କରି ମଧ୍ୟ ବେଶ୍ ଚମତ୍କାର ପଦ୍ଧତିରେ ଏକ କାଳିସୀତତ୍ତ୍ୱ ଅବଶ୍ୟ ତିଆରି କରାଯାଇ ପାରିବ । ଆମ ଅନାମେ ମଧ୍ୟ ବ୍ୟକ୍ତି ପରିଚୟର ସେହି ଅନ୍ୟ ସନ୍ତକଟିକୁ ଫିଙ୍ଗି ଦେଇ କିଞ୍ଚିତ୍ ଉତ୍ସାହାତିଶଯ୍ୟରେ ସେହି ଅନ୍ୟଟିର ଆବର୍ତ୍ତ ମଧ୍ୟରେ ଯାଇ ପଡ଼ିଗଲେ ଓ ତା'ପରେ ଛିନ୍ନଛତ୍ର ମଧ୍ୟ ହୋଇଗଲେ ! ସେହି ବିଜ୍ଞପ୍ତି ପତ୍ରରେ ଠାଏ ଏପରି ଆଉକିଛି ଅଭିପ୍ରାୟର ଶକୁନଟିଏ ବହନ କରୁଥିବାର ଏକ ଆଭାସ ବି ହୁଏତ ରହିଥିଲା; "ଭାରତୀୟ ସଂଘୀୟ ସଂବିଧାନରେ ଓଡ଼ିଶା ପ୍ରଦେଶ ନିର୍ଦ୍ଦିଷ୍ଟ ଭାଷାଭାଷୀ ଓ ସଂସ୍କୃତି ସଂପନ୍ନ ଏକ ଭୌଗୋଳିକ ଅବସ୍ଥିତି । ...ଆଜି ଆମ ଚତୁଃପାର୍ଶ୍ୱରେ ବହୁ ଅଣଓଡ଼ିଆ ଓ ବିଦେଶୀ ଅନୁପ୍ରବେଶକାରୀ ତଥା ଶରଣାର୍ଥୀ । ଏମାନଙ୍କ କୁପ୍ରଭାବ ଓଡ଼ିଆଙ୍କ ଜାତୀୟ ଚରିତ୍ରକୁ ନଷ୍ଟ କରୁଛି । ଓଡ଼ିଶାରେ କଳକାରଖାନା ବସାଇବା

ବାହାନାରେ ଆମେ ବହୁ ଅଣଓଡ଼ିଆଙ୍କୁ ସ୍ଥାପିତ କରିବାରେ ଲାଗିଛୁ ଏବଂ ବିଦେଶୀ ମୁଦ୍ରା ଅର୍ଜନ ବାହାନାରେ ଆମର ମାଟି, ପାଣି ଓ ପବନକୁ ଖୋଳି ତାଡ଼ି ସୁନ୍ଦର ପରିବେଶକୁ କଦାକାର କରୁଛୁ ଓ ଭବିଷ୍ୟତକୁ ବିପର୍ଯ୍ୟସ୍ତ କରୁଛୁ।" ଏବଂ, ମନେ ମଧ୍ୟ ରହିବା ଉଚିତ ଯେ ଏହି ବିଜ୍ଞପ୍ତିପତ୍ରଟି "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ" ନାମକ ସେହି ଉପନିଷଦୀୟ ବାକ୍ୟଟିକୁ ଶୀର୍ଷକ ରୂପେ ବହନ କରିଥିଲା।

– ୩ –

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ କହିଲେ ମତଭେଦରେ ତିନୋଟି ଭିନ୍ନ ଭିନ୍ନ ସମୟକୁ ବୁଝାଇ ଆସିଛି। ସତେଅବା ତିନି କିସମର ମତଲବରେ ତିନୋଟି ଭିନ୍ନ ଭିନ୍ନ ପର୍ଯ୍ୟାୟକୁ ଠାବ କରାଯାଇଛି। ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟରେ ପ୍ରାୟ ସର୍ବପ୍ରଥମ ମନ୍ଥନଟିକୁ କରିଥିବା ଅଧ୍ୟାପକ ଶ୍ରୀଯୁକ୍ତ ନଟବର ସାମନ୍ତରାୟ ଭୂରି ଭୂରି ତଥ୍ୟ ପ୍ରତିଷ୍ଠା ଦ୍ୱାରା ରାଧାନାଥ, ମଧୁସୂଦନ ଓ ସମକାଳୀନ ଆଉମାନଙ୍କୁ ଘଟଣାପ୍ରକରଣର ବହୁ ବ୍ୟବଚ୍ଛେଦର ମାଧ୍ୟମରେ ସ୍ୱନିବନ୍ଧଟିରେ ଉପସ୍ଥାପନା କରିଛନ୍ତି। ଏବେ ମଧ୍ୟ ସେମାନଙ୍କର ସେହି ଉଦ୍‌ବେଳନ-କାଳଟିକୁ ଆମେ ଓଡ଼ିଶାର ରେନେସାଁସ ବୋଲି କହୁଛୁ ଏବଂ ଇଉରୋପୀୟ ଇତିହାସରୁ ରେନେସାଁସ୍ ନାମକ ଆମର ଧାରଣା ପୁଞ୍ଜିକୁ ଧରି କଲିକତା ବାଟ ଦେଇ ସିଧା ଆସି ଓଡ଼ିଶାର ଉପକୂଳରେ ପହଞ୍ଚି ଯାଇଛୁ। ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଆଉଏକ ବନ୍ଧୁଗୋଷ୍ଠୀ 'ଆଧୁନିକ' ନାମରେ ସତକୁ ସତ ପତ୍ରିକାଟିଏ ବାହାର କରିବାରେ ବ୍ରତୀ ବି ହୋଇଥିଲେ। ସେମାନେ ଖୁବ୍ ଅଳ୍ପଦିନ ପାଇଁ ଖୁଡ୍‌ଖାଡ୍ ହୋଇଥିଲେ ସତ, ମାତ୍ର ସାହିତ୍ୟର ସଂଜ୍ଞାରେ ଏକ ପରିଚ୍ଛନ୍ନ ସ୍ୱତନ୍ତ୍ର ପ୍ରସାର ତଥା ଆବେଦନ ଆଣି ଦେଇଥିଲେ। ତେଣୁ, ହୁଏତ ସେମାନେ ସିନା ଭାରି ଶୀଘ୍ର ତମ୍ବୁ ଭାଙ୍ଗି ଚାଲିଗଲେ ବୋଲି ସେତେବେଳେ ଲାଗିଲା, – ମାତ୍ର ଆବେଦନଟି ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ପ୍ରାୟ ଏକ ସ୍ଥାୟୀ catalyst ହୋଇ ରହିଗଲା, – ସେହି ଶ୍ରଦ୍ଧାଟିର ପ୍ରତିନିଧିତ୍ୱ କରୁଥିବା ଖାସ୍ କବି ଓ ଲେଖକମାନେ ଏବେ ମଧ୍ୟ ରହିଛନ୍ତି; ସମୁଦାୟ ବିଶ୍ୱସାହିତ୍ୟରେ ଅଛନ୍ତି, ତେଣୁ ଭାରତୀୟ ଅନ୍ୟ ସକଳ ଭାଷା ସାହିତ୍ୟ ସମେତ ଓଡ଼ିଆ ସାହିତ୍ୟରେ ମଧ୍ୟ ରହିଛନ୍ତି; ଆଧୁନିକ ସାହିତ୍ୟର ତୃତୀୟ ନମୁନାଟିକୁ ଆମେ ଦ୍ୱିତୀୟ ମହାଯୁଦ୍ଧ ପରେ ହିଁ ଭେଟିବା। ତୁଳାନାତ୍ମକ ଭାବରେ ଅବଲୋକନ କଲେ ଖାସ୍ ଓ ବିଶେଷ ଭାବରେ ଆମ କବିତାର କ୍ଷେତ୍ରରେ ତାହାକୁ ଭେଟି ପାରିବା। ଓଡ଼ିଆ ଭାଷାରେ ତ ଆଗରୁ ଅମାର, ଅମାର କବିତା ରହିଥିଲା ଓ ସେହି ମୁତାବକ କେତେ ନା କେତେ କବି ରହିଥିଲେ। କିନ୍ତୁ, ଏହି ଯେଉଁ ନୂଆ ମୁଥଟି ଇହାଦେ ବାହାରିଗଲେ,

ଏମାନଙ୍କର ସେଗୁଡ଼ିକ ସହିତ କୌଣସି ଖିଅ ଲାଗିନଥିଲା। ସତେଅବା ଆଉ ଏକ ଅନ୍ତରୀକ୍ଷରୁ ଏମାନେ ଚରୁଭକ୍ଷି ଆମ ଚଉପାହୀ ଗୁଡ଼ାକୁ ମାଡ଼ିବସିଲେ ଏବଂ ସେମାନେ ଯେଉଁ ନିତାନ୍ତ ଅଭିନବଟିକୁ ସାଙ୍ଗରେ ଧରି ଆସିଛନ୍ତି, ତା'ତୁଳନାରେ ଆଗରୁ ଗଚ୍ଛିତ ଦ୍ରବ୍ୟଗୁଡ଼ାକ ମୋଟେ ପାସଙ୍ଗରେ ପଡ଼ିବନାହିଁ ବୋଲି ଆମକୁ କେଡ଼େ ବାଗରେ ବୁଝାଇ ବି ଦେଇଥିଲେ। ଭାରତବର୍ଷ ସେତେବେଳେ ନୂଆ ହୋଇ ରାଜନୀତିକ ସ୍ୱାଧୀନତା ଲାଭ କରିଥାଏ; ନୂଆ କେତେ କ'ଣ ଖୋଜିବ ସୃଜିପାରିବ ବୋଲି ସରଳ ମନଟିଏ ନେଇ ସଜ ହେଉଥାଏ। ଅମାପ ସ୍ୱପ୍ନ ଓ ଜିଜ୍ଞାସା ସହିତ ସଂକଳ୍ପମାନଙ୍କର ନିର୍ଦ୍ଦେଶନାରେ ତା'ର ଇପ୍ସିତ ମହନୀୟ ସଂପର୍କଗୁଡ଼ିକୁ ଦେଇ ଏକ ନୂତନ ଦେଶର ନିର୍ମାଣ କରିବା ନିମନ୍ତେ ରାଜି ହୋଇ ଅପେକ୍ଷା କରିଥାଏ। ତା' ସାହିତ୍ୟ ମଧ୍ୟ ଏଥିରେ ତାକୁ ସାହାଯ୍ୟ କରିବ ବୋଲି ଅପେକ୍ଷା ରଖିଥାଏ। ସେତିକିବେଳେ ଏହି ତୃତୀୟ ଆଧୁନିକ ସାହିତ୍ୟର ପର୍ଯ୍ୟାୟଟି ଆସି ପହଞ୍ଚିଗଲା। ମୁଖ୍ୟତଃ କବିତାର କ୍ଷେତ୍ରରେ ଆସିଥିଲା।

ବର୍ତ୍ତମାନ ପଛକୁ ଅନାଇ ଆଧୁନିକ ଏଇଟିର ଅନୁରକ୍ତି ଓ ଆନୁଗତ୍ୟଗୁଡ଼ିକୁ ଓଲଟପାଲଟ କରି ଦେଖିବସିଲେ ଭାରି ଧରା ପଡ଼ିଯିବ ଯେ ଏହି କବିମାନେ ପ୍ରାୟ ଏକ ମତଲବୀ ପ୍ରୀତିରେ ଇଂରାଜୀ ସାହିତ୍ୟକୁ ନିଜର ଖାମିନ୍ଦ ଭଳି ମାନି ନେଇଥିଲେ। ସ୍ୱାଧୀନ ଭାରତର ଆହ୍ୱାନ ଓ ଉଦ୍‌ବେଳନଗୁଡ଼ିକରେ ସତେଅବା ଆଦୌ କୌଣସି ଭୂମିକା ଗ୍ରହଣ କରିବେ ନାହିଁ ବୋଲି ସେମାନେ ଯେପରି କରିଥିଲେ କି? ଉଚ୍ଚ ଚାକିରିରେ ଥିଲେ ଏବଂ ସେହି ପୁରୁଣା ମଙ୍ଗରାଜିଆ ଅମଲଟାକୁ ହିଁ ଦେଶର ଶାସନ ତଥା ଦେଶର ସଂସ୍କୃତିରେ ଦୋରସ୍ତ କରି ରଖି ଆପଣାକୁ ଭଳି ଭଳି professional ସିଦ୍ଧି ମଧ୍ୟରେ ସତେଅବା ଆଏବା ଆଉ କେତେଟା ପୁରୁଷପାଇଁ ନିରଙ୍କୁଶ ଭାବରେ ବାଟ ଛାଡ଼ିଦେବେ ବୋଲି ପଣ କରିଥିଲେ କି? ତେଣିକା ଶୈଳୀରେ କବିତା ଲେଖୁଥିଲେ, ଗପ ଲେଖୁଥିଲେ। ସେମାନଙ୍କ ଭିତରୁ ଅଧିକାଂଶ ଇଂରାଜୀ ଭାଷାରେ ଅଧ୍ୟାପନା କରୁଥିଲେ। ଏହି କାର୍ଯ୍ୟ ନିମନ୍ତେ ଭାରତୀୟ ଭାଷାଗୁଡ଼ିକ ନିତାନ୍ତ ଅସମର୍ଥ ବୋଲି ହାୱାଟାଏ ସୃଷ୍ଟି ବି କରିଥିଲେ। ଓଡ଼ିଆ କବିତାଗୁଡ଼ିକୁ ଇଂରାଜୀ ଢଙ୍ଗରେ ଲେଖିଲେ ଏବଂ ସୁଯୋଗ ପାଇବା ମାତ୍ରକେ ସେଗୁଡ଼ିକୁ ଇଂରାଜୀରେ ଅନୁବାଦ କରି ତେଣେ ପଠାଇ ଦେଉଥିଲେ। ତଥାକଥିତ ଉଚ୍ଚ ଶିକ୍ଷାଟା ଅଧିକତର ଅର୍ଥରେ ସେହିମାନଙ୍କର ବରାଦ ଅନୁସାରେ ଚାଲୁଥିଲା ଏବଂ ତେଣୁ ସାହିତ୍ୟର ଅଳିନ୍ଦଟାରେ

ମଧ୍ୟ ସେହିମାନେ ହିଁ ଅର୍ବାଚୀନମାନଙ୍କ ନିମନ୍ତେ ଅସଲ ସାହେବଙ୍କ ପରି ଦେଖାଗଲେ। ତୃତୀୟ ବିଶ୍ୱଟିକୁ ଉପନିବେଶବାଦୀଙ୍କ ପରାକ୍ରମ ଭିତରେ ବେହେରାଣିଆ ବିଚରାଟିଏ ପରି ଦେଖାଯିବା ଭଳି ସବୁମନ୍ତେ ବରାଦ ଯେ କରା ଯାଉଥିଲା, ସେଥିରେ କୌଣସି ସନ୍ଦେହ ନଥିଲା। ଦେଶଟାଯାକ ସବୁକିଛି ଶୁଖି ଶୁଖି ହିଁ ଯାଉଥିଲା, ତଥାପି ଏହି ମାର୍କାର ଆଧୁନିକମାନେ କବିସତ୍ୟ ବୋଲି ଗୋଟାଏ ପୂରା ମିଠା ଟାକୁଆକୁ ଉଲ୍ଲସିତ ଭାବରେ ଚୁଷିବାରେ ଲାଗିଥିଲେ। ଆପଣାର ଯୁକ୍ତିମାନ ଦେଇ ସେମାନେ ଜୀବନସତ୍ୟଟାକୁ ଏହି ତଥାକଥିତ କବିସତ୍ୟଠାରୁ ସଂପୂର୍ଣ୍ଣ ଭାବରେ ଦୋସରା ବୋଲି ଘୋଷଣା କରିଥିଲେ।

ଏହି ପୂର୍ଣ୍ଣ ପର୍ଯ୍ୟାୟଟିରେ ବ୍ୟତିକ୍ରମମାନେ ରହିଥିଲେ ସତ, ମାତ୍ର ପ୍ରତାପୀମାନଙ୍କର ଝିଲିମିଲି ଭିତରେ ବାହାରକୁ ଆପଣାର ପୂର୍ଣ୍ଣ ପ୍ରତିଭାରେ ପ୍ରବେଶ କରିପାରୁ ନଥିଲେ। ସମ୍ଭବତଃ ଉଧେଇ ପାରୁ ନଥିଲେ। ଉଢୁଆଳ ହୋଇ ରହି ଯାଉଥିଲେ। ଏହି ବେଳଗୁଡ଼ିକର ସେମାନଙ୍କୁ ଠାବ କରିବାକୁ ଯାଇ ଆମର ଦୁର୍ଗାଚରଣ ପରିଡ଼ା, ଗିରିଜା ବଳିଆରସିଂହ, ବ୍ରହ୍ମାନନ୍ଦ ଦାସ, ପ୍ରସନ୍ନ ମିଶ୍ର, ଶ୍ରୀନିବାସ ଉଦ୍‌ଗାତା ଏହିପରି କେତେ କେତେ ନାମ ମନେ ପଡ଼ିଯିବେ, ତଥା ଆଉ ଗୋଟାଏ ପଲା ଭିତରେ ବ୍ରଜ ରଥ ଓ ତାଙ୍କରି ସରିସା ଆଉମାନେ ବି ଅପେକ୍ଷା କରି ରହିଥିବାର ମଧ୍ୟ ଦିଶି ଯାଉଥିବ। କିନ୍ତୁ ହାଉଆଗୁଡ଼ାକୁ ଏପରି ଭାବରେ ଏକମଣ କରି ରଖା ଯାଇଥିଲା ଯେ, ଆଧୁନିକତାର ପ୍ରାୟ ସବୁଯାକ ମୁକାମକୁ ସେହି ପାଟମାନେ ହିଁ ମାରି ନେଉଥିଲେ। କବିତାର ପରଖହାଟରେ ସେମାନେ ପ୍ରାୟ ଜଣେ ଜଣେ ସାହୁକାରର ମର୍ଯ୍ୟାଦା ପାଉଥିଲେ, ପତ୍ରିକାମାନଙ୍କରେ ଏବଂ କବିତା ହାଟଟାରେ ସେହିମାନଙ୍କର କବିତା ସର୍ବାଗ୍ରରେ ରହୁଥିଲା, କବିତା ପାଠୋତ୍ସବମାନଙ୍କରେ ସବାଆଗ ସେହିମାନଙ୍କୁ ଡାକରା ହେଉଥିଲା। ସେହିମାନେ ହିଁ ସାହିତ୍ୟ ପୁରସ୍କାରର କଚେରୀମାନଙ୍କରେ ସବାଆଗ ସିଦ୍ଧିପ୍ରାପ୍ତ ହେଉଥିଲେ। ତଥାପି କ୍ରମେ ବୟସ ବଢ଼ିଲା, ଉଚ୍ଚ ପଦଗୁଡ଼ାକରୁ ବି ବାହାରି ଆସିବାକୁ ପଡ଼ିଲା। ସମ୍ଭବତଃ ସେହି ଅନ୍ୟବେଳଟି ଆସିବାରୁ ଉଢୁଆଳରେ ରହିଥିବା ସେହି ଅନ୍ୟମାନେ କ୍ରମେ ଅଧିକ ପ୍ରତ୍ୟକ୍ଷ ହୋଇ ଆସୁଛନ୍ତି। ଅଧିକ ଶ୍ରଦ୍ଧାଭାଜନ ହେଉଛନ୍ତି ଏବଂ ଓଡ଼ିଆ ଆଧୁନିକ କବିତା ତଥା ଆଧୁନିକ ଗଳ୍ପର ଏକ ଅନ୍ୟ ପାବଚ୍ଛ ପଡ଼ି ଆସୁଥିବା ପରି ଅନୁଭବ ହେଉଛି। ଏକା ଏକା ଧୁରୀଣମାନଙ୍କ ସାମନାରେ ସମ୍ଭବତଃ ପାରି ହେବନାହିଁ ବୋଲି ଏକଦା ଅନାମମାନେ ମୂଳରୁହିଁ ମେଳଟିଏ ଗଢ଼ି ବାହାରିଥିଲେ କି ? ମେଳଟି ରହିଲା ନାହିଁ ଏବଂ ବିଶେଷତଃ ଶ୍ରୀ ମଧୁ ମହାନ୍ତିଙ୍କ ପ୍ରୟାଣ ପରେ ତାହା ଅନ୍ୟମନସ୍କ

ହୋଇ ଯାଉଥିବା ପରି ଉତ୍ସାହରେ ଏଇଟା କିମ୍ବା ସେଇଟା ମଧ୍ୟକୁ ହାମୁଡ଼େଇ ପଡ଼ିବାଲାଗି ମନ କଲା ସିନା, ତଥାପି କ୍ରମେ ଆବେଦନଗୁଡ଼ିକ ଧର୍ମତଃ ବ୍ୟକ୍ତିଗତ ହେଲେ। କୁମାର ମହାନ୍ତି କ'ଣ ସେହି ମୂଳରୁ ହିଁ ସକଳ ମାପର ମୂଲ୍ୟାୟନରେ ନିଆରା ବି ଶୁଭୁଥିଲେ, ନିଆରା ପରିଚୟଟିଏ ଦେଉଥିଲେ ଏବଂ ମେଳ ଭିତରେ ସର୍ବଦା ଏକ ଅଲଗା ଚାହାଣି ରୂପେ ବାରି ହୋଇ ପଡୁଥିଲେ କି ? ଭାରି କହିବାକୁ ମନ ହେଉଛି, କୁମାର ମହାନ୍ତି ଆହୁରି ଅଧିକ ବର୍ଷ ବଞ୍ଚି ଥାଆନ୍ତେ, କବିତାକୁ ମାଧ୍ୟମ କରି ଆମକୁ ଆହୁରି କେତେ କେତେ ଦୂର ତଥା ନିକଟର ନିବିଡ଼ ପରିଚୟମାନ ଦେଇଥାଆନ୍ତେ। ନାମଟିଏ ହୋଇ ଅନାମର ପରିଚର୍ଯ୍ୟା କରିଥାଆନ୍ତେ ଏବଂ ଅନାମ ନାମକ ମେଳରେ ଥାଇ ଆମ ଆଗରେ ତଥାପି ଅନନ୍ୟ ଏକ ଆତ୍ମୀୟତାର ମୂର୍ତ୍ତ ପ୍ରତିନିଧି ହୋଇ ଦିଶିଦିଶି ବି ଯାଉଥାଆନ୍ତେ।




ଏହି ଆଲୋଚନାଟି ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ଦ୍ୱାରା ପ୍ରକାଶିତ
'କୋଣାର୍କ' ପୁସ୍ତିକାରୁ ସଂଗୃହୀତ ହୋଇଅଛି।



(ଅନାମ) ଦେହରେ ଥିଲା ଶ୍ରୀକ୍ଷେତ୍ରର ଦୟଣା-ତୁଳସୀର ଗନ୍ଧ, ବକ୍ତବ୍ୟରେ ବ୍ୟକ୍ତିର ଅନନ୍ତ ପ୍ରତି ଅନ୍ୱେଷଣ ସହିତ ଥିଲା ତୀବ୍ର ସମାଜ ଭାବନା ।

**ପ୍ରଫେସର ଡ. କଇଳାଶ ପଟ୍ଟନାୟକ**

ସରକାରୀ ଚାକିରିରେ ଥାଇ ଜରୁରୀ ପରିସ୍ଥିତି ବିରୋଧରେ କବିତାରେ ପ୍ରତିବାଦର ସ୍ୱର ତୋଳି ଦଣ୍ଡିତ ହୋଇବି ନିଜ ଅକୁତୋଭୟତାର ପରିଚୟ ଦେଇଛନ୍ତି ।

**ପ୍ରଫେସର ଡ. କୃଷ୍ଣଚନ୍ଦ୍ର ପ୍ରଧାନ**

ଉତ୍କଳୀୟ ବିଷୟବାସନା ପ୍ରତି ଭାବାନ୍ତରିତ ଅଳୀକ ତତ୍ତ୍ୱକୁ ଅନ୍ତର୍ନିହିତ ସ୍ୱର ଭାବରେ ପ୍ରବାହୀ କରି ଦେଇ ତାଙ୍କ କବିତାର ଶବ୍ଦସନ୍ଧାଣ ଭିତରେ ବିବେକୀ କଲ୍ୟାଣବୋଧର ଏକ ଇଙ୍ଗିତ ଥାଏ ଯାହା ପାଠକକୁ ସଜାଡ଼ିଦିଏ ଓ ସାର୍ବିକ ଜୀବନ ପ୍ରତି ସମ୍ବେଦନଶୀଳ କରିଦିଏ ।

**ପ୍ରଫେସର ଡ. ସନ୍ତୋଷ ତ୍ରିପାଠୀ**

ତାଙ୍କର ମଣିଷପଣିଆ ଓ ପ୍ରକୃତ ମଣିଷକୁ ଖୋଜିବୁଲୁଥିବାର ସୂକ୍ଷ୍ମ ଆତ୍ମାଟି ଆଜିବି ଆକାଶ ପବନରେ ରହିଛି ସଞ୍ଜିବିତ ହୋଇ । ଖାଲି ଦରକାର ଟିକିଏ ଆନ୍ତରିକତା ସେହି ବ୍ୟଥାଭରା କଣ୍ଠସ୍ୱର ଶୁଣିବା ପାଇଁ ।

**ପ୍ରଫେସର ଡ. ମଣୀନ୍ଦ୍ର କୁମାର ମେହେର**

www.dhaulibooks.com

ISBN 978-93-89382-32-7






DHAULI BOOKS

Poetry ₹୧୯୫.